

# A DESCRIPTIVE CATALOGUE OF ORIYA MANUSCRIPTS

**ORIYĀ KĀVYA**

**( CHHA – TA )**

## VOLUME – IX

*Sri Nilamani Mishra.*

# A
# DESCRIPTIVE CATALOGUE
OF
# ORIYA MANUSCRIPTS

**ORIYA KĀVYA**

( CHHA – TA )

## VOLUME — IX

**IN THE COLLECTION**

**OF**

**THE ORISSA STATE MUSEUM**

**BHUBANESWAR.**

# PREFACE

It is a great pleasure to present the "Descriptive Catalogue of Oriya Manuscripts, Vol. IX" as the third volume of the series of Oriya Catalogues, which was a long felt need of the scholars. Previously, we presented the two volumes of the Oriya Descriptive Catalogues to the world of scholars, which were Volume VI and VIII and also the first five volumes and Vol. VII dealing with Sanskrit manuscripts on different subjects.

The present volume containing detailed information about 223 manuscripts arranged alphabetically, begins with the Oriya alphabet 'Chha' and ends with 'Ta'. The introductions of the preceeding two volumes of the Descriptive Catalogues of Oriya manuscripts contain a portion of the history of Oriya literature. In the present volume, I have discussed about the Oriya fictions (ओड़िआ काल्पनिक काव्य), Oriya translation works (ओड़िआ अनुवाद साहित्य), and the background of the modern Oriya literature (आधुनिक आड़िआ साहित्यर पृष्ठभूमि). Besides, an alphabetical list of authors has also been added as an Index of this volume to facilitate the scholars in their research work on ancient Oriya literature.

On this occasion, I acknowledge with pleasure, my indebtedness to Sri B. K. Misra, I. A. S., ex-Secretary and Director, Cultural Affairs, Orissa, who actually initiated the idea of the publication of the Descriptive Catalogues of Oriya Manuscripts.

My thanks are also due to Sri H. N. Das Mahapatra, I. A. S., Secretary and Sri A. K. Biswal, I. A. S, Director, Tourism and Cultural Affairs, Orissa, for their interest shown in the publication of this work.

I am also grateful to Dr. H. C. Das, Superintendent of Museums, Orissa, who evinced keen interest in the publication of this volume.

I offer my thanks to Sri K. N. Mahapatra, the eminent historian for his kind guidance in preparation of this volume.

I am also thankful to Sri K.K. Bisoi, my assistant, who helped me a lot in the compilation of this volume.

I hope, this volume, inspite of omissions if any, will throw a flood of new light on the history of ancient and mediaeval Oriya literature.

Orissa State Museum,
BHUBANESWAR.
May 6, 1974
Buddha Pūrṇṇimā.

*Nilamani Mishra*
CURATOR.

## — ଭୂ ମି କା —

ଓଡ଼ିଆ ବିବରଣାତ୍ମକ ପୋଥି ତାଲିକାର ପ୍ରଥମ ଖଣ୍ଡରେ ୨୪୭ ଖଣ୍ଡ ପୋଥିର ନାମ ଗୁଡ଼ିକୁ 'ଅ' ଠାରୁ 'କ' ପର୍ଯ୍ୟନ୍ତ ଅକ୍ଷର କ୍ରମରେ ସଜାଇ ବିବରଣ ତାଲିକାର ୨ୟ ଖଣ୍ଡ ରୂପେ ୧୯୬୦ ମସିହାରେ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ପକ୍ଷରୁ ପ୍ରକାଶ କରାଯାଇଛି ଏବଂ ଉକ୍ତ ବିବରଣ ତାଲିକାର ଭୂମିକାରେ ଓଡ଼ିଆ ଲିପି, ଓଡ଼ିଆ ଭାଷା, ଓଡ଼ିଆ ନାଥ ସାହିତ୍ୟ, ଓଡ଼ିଆ ଗଦ୍ୟ ସାହିତ୍ୟ, ଓଡ଼ିଆ ଗୀତିକାବ୍ୟ, ଓଡ଼ିଆ ରାମ ସାହିତ୍ୟ ଓ ଶ୍ରୀ ଜଗନ୍ନାଥ ସାହିତ୍ୟ ସମ୍ବନ୍ଧରେ ସମ୍ୟକ୍ ଆଲୋଚନା କରାଯାଇଛି ।

ସେହି କ୍ରମରେ ଓଡ଼ିଆ ପୋଥି ଗୁଡ଼ିକର ବିବରଣ ତାଲିକାର ଦ୍ୱିତୀୟ ଖଣ୍ଡରେ 'ଖ' ଠାରୁ 'ଚ' ପର୍ଯ୍ୟନ୍ତ ବର୍ଣ୍ଣ ନାମାଦ୍ୟରେ ଥିବା ୩୩୭ ଖଣ୍ଡ ପୋଥିର ବିବରଣାତ୍ମକ ତାଲିକା ୧୯୭୩ ମସିହାରେ ରାଜ୍ୟ ସଂଗ୍ରହାଳୟ ପକ୍ଷରୁ ପ୍ରକାଶ ପାଇଛି । ତାହା ଓଡ଼ିଆ ବିବରଣାତ୍ମକ ପୋଥି ତାଲିକାର ଦ୍ୱିତୀୟ ଖଣ୍ଡ ରୂପେ ପ୍ରକାଶ ପାଇଥିଲେ ହେଁ, ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ତାଳପତ୍ର ପୋଥି ବିବରଣ ତାଲିକାରେ ୮ମ ଖଣ୍ଡ ରୂପେ ସ୍ଥାନ ପାଇଛି । ଉକ୍ତ ବିବରଣ ତାଲିକାର ଭୂମିକାରେ ଓଡ଼ିଆ ଜ୍ଞାନମିଶ୍ରା ଭକ୍ତି ସାହିତ୍ୟ ବା ପଞ୍ଚସଖା ସାହିତ୍ୟ, ଓଡ଼ିଆ ଐତିହାସିକ କାବ୍ୟ ଓ ଓଡ଼ିଆ କୃଷ୍ଣ କାବ୍ୟ ସମ୍ବନ୍ଧରେ ସଂକ୍ଷିପ୍ତ ଆଲୋଚନା କରାଯାଇଛି ।

ପ୍ରସ୍ତୁତ ବିବରଣାତ୍ମକ ତାଲିକାରେ 'ଛ' ଠାରୁ 'ତ' ପର୍ଯ୍ୟନ୍ତ ବର୍ଣ୍ଣ ନାମ ଆଦ୍ୟରେ ଥିବା ୨୨୩ ଖଣ୍ଡ ପୋଥିର ବିସ୍ତୃତ ବିବରଣାତ୍ମକ ତାଲିକା ପ୍ରସ୍ତୁତ କରାଯାଇଛି ।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ଓଡ଼ିଆ ପୋଥି ଗୁଡ଼ିକର ବିବରଣାତ୍ମକ ତାଲିକା ପାଞ୍ଚ ଖଣ୍ଡରୁ ଅଧିକ ହେବାର ସମ୍ଭାବନା । ପୂର୍ବରୁ ଏହା ପାଞ୍ଚ ଖଣ୍ଡରେ ଶେଷ ହେବାର ପରିକଳ୍ପନା କରାଯାଇଥିଲା । କିନ୍ତୁ ପ୍ରତିବର୍ଷ ଓଡ଼ିଶାର ପୁରପଲ୍ଲୀରୁ ଶତାଧିକ ପୋଥି ସଂଗୃହୀତ ହୋଇ ସଂଗ୍ରହାଳୟର ପୋଥି ଭଣ୍ଡାରରେ

ସଂରକ୍ଷିତ ହେଉଛି । ତାହା ଫଳରେ ନୂତନ ପୋଥିର ସଂଖ୍ୟା ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ପ୍ରତ୍ୟେକ ଖଣ୍ଡର ଭୂମିକା ରୂପେ ଓଡ଼ିଆ ସାହିତ୍ୟର ଇତିହାସ ସମ୍ପର୍କରେ କିଛି କିଛି ଆଲୋଚନା କରାଯାଇଛି । ସେହି ଦୃଷ୍ଟିରୁ ପ୍ରସ୍ତୁତ ଖଣ୍ଡର ଭୂମିକା ରୂପେ ଓଡ଼ିଆ କାଳ୍ପନିକ କାବ୍ୟ, ଅନୁବାଦ ସାହିତ୍ୟ ତଥା ଆଧୁନିକ ଓଡ଼ିଆ ସାହିତ୍ୟର ପୃଷ୍ଠଭୂମି ଶୀର୍ଷକ ତିନୋଟି ବିଷୟର ସଂକ୍ଷିପ୍ତ ଆଲୋଚନା କରାଯାଉଛି ।

## ଓଡ଼ିଆ କାଳ୍ପନିକ କାବ୍ୟ :—

ପ୍ରାଚୀନ ଭାରତୀୟ ସାହିତ୍ୟରେ କାଳ୍ପନିକ କାବ୍ୟର ବିକାଶଧାରା କିପରି ଆରମ୍ଭ ହୋଇଥିଲା, ସେ ସମ୍ବନ୍ଧରେ କିଞ୍ଚିତ ଆଲୋଚନା କରିବା ହେଉଛି— ଓଡ଼ିଆ କାଳ୍ପନିକ କାବ୍ୟର ପ୍ରସ୍ତାବନା । ଅନ୍ୟଥା ହଠାତ୍ ଗୋଟିଏ ପ୍ରାନ୍ତୀୟ ସାହିତ୍ୟରେ କାଳ୍ପନିକ କାବ୍ୟର ସୂତ୍ରପାତ ହେବା ନିତାନ୍ତ ଅସମୀଚୀନ ତଥା ଅସ୍ୱାଭାବିକ ବୋଲି ମନେହୁଏ ।

ଭାରତୀୟ ତଥା ବୈଦେଶିକ ବିଦ୍ୱାନ୍‌ମାନଙ୍କ ଦ୍ୱାରା ବୈଦିକ ସାହିତ୍ୟ ଅନ୍ତର୍ଗତ ଯେଉଁ କାଳ୍ପନିକ କାବ୍ୟ କଥାବସ୍ତୁ ଆମ ଆଗରେ ପରିବେଶିତ ହୋଇଛି, ସାହିତ୍ୟିକ ମୂଲ୍ୟବୋଧ ଦୃଷ୍ଟିରୁ ତାହାର ସ୍ଥାନ ଅନେକ ଉଚ୍ଚରେ । ଯଜ୍ଞଭୂମିର ସୁରଭିତ ବାତାବରଣ ମଧ୍ୟରେ ତାତ୍‌କାଳୀନ ମୁନିଋଷି ଓ ରାଜା ମହାରାଜାଙ୍କର ଯେଉଁ ମହାନ୍ ଜୀବନ ଚରିତ ବୈଦିକ ସାହିତ୍ୟରେ ରୂପାୟିତ ହୋଇଛି, ତାହା ଆଜିର ଅତ୍ୟାଧୁନିକ ସାହିତ୍ୟିକଙ୍କ ପକ୍ଷରେ ହେୟ ତଥା ଅପ୍ରାସଙ୍ଗିକ ସାହିତ୍ୟ ରୂପେ ପରିଗୃହୀତ ହେଉଥିଲେ ହେଁ, ନିରପେକ୍ଷ ସମାଲୋଚକମାନଙ୍କ ଆଲୋଚନାରେ ସେଗୁଡ଼ିକର ମୂଲ୍ୟ ଯଥେଷ୍ଟ ରହିଛି । ସେହି କଥାବସ୍ତୁ ମଧ୍ୟରୁ କେତୋଟି ସୁନ୍ଦର ଆଖ୍ୟାୟିକାରୁ ଜଣାଯାଏ ଯେ, ଚର୍ମ ରୋଗ ନିମିତ୍ତ ପତିଦ୍ୱାରା ତିରସ୍କୃତା 'ଅପାଲା' ନିଜ ସାଧନା ବଳରେ ଇନ୍ଦ୍ରଙ୍କୁ ସନ୍ତୁଷ୍ଟ କରି ଅନନ୍ୟସୁନ୍ଦରୀ ରୂପରେ ପରିଣତ ହୋଇ ପାରିଥିଲେ । ମହାଋଷି 'ସୋଭରିକାଣ୍ୱ' ଇନ୍ଦ୍ରଙ୍କୁ ଆରାଧନା କରି ଅକ୍ଷୟ ଯୌବନ ଓ ବିଳାସର ଉପକରଣମାନ ଲାଭ କରିବା ସଙ୍ଗେ ସଙ୍ଗେ ପଚିଶଟି ଷୋଡ଼ଶୀ ରାଜକୁମାରୀଙ୍କ ସହିତ ବିବାହ କରି ବହୁଦିନ ପର୍ଯ୍ୟନ୍ତ ଭୋଗବିଳାସରେ ଲିପ୍ତ ରହିବା ପରେ, ଶେଷରେ ତାହାର ନିଃସାରତା ସମ୍ବନ୍ଧରେ ଅଲୌକିକ ଦିବ୍ୟଜ୍ଞାନ ଅର୍ଜନ କରିଥିଲେ । ଋଷି ଅଜୀଗର୍ତ୍ତି ତିନିଶତ ଧେନୁ ଲୋଭରେ ନିଜର ପୁତ୍ର ଶୁନଃଶେଫଙ୍କୁ ବିକ୍ରୟ କରିବା ସଙ୍ଗେ ସଙ୍ଗେ ତାଙ୍କୁ ଯଜ୍ଞରେ ବଳି ଦେବାକୁ ସମ୍ମତ ହୋଇଥିଲେ ।

ମହାଦାମୀ ମହର୍ଷି 'ବାଜଶ୍ରବା'ଙ୍କ ଦ୍ୱାରା ଅଭିମାନର ସହିତ ଅନୁପଯୁକ୍ତ ଗୋଦାନର ପ୍ରତିବାଦ କରି ଋଷିକୁମାର 'ନଚିକେତା' ହଠାଗ୍ରହ କରି ଯମ ଭୁବନକୁ ଯାଇ ଅଗ୍ନି ରହସ୍ୟ ତଥା ମୃତ୍ୟୁ ରହସ୍ୟ ଜାଣିବାରେ ସକ୍ଷମ ହୋଇ ପାରିଥିଲେ ।

ନାରୀର ପ୍ରେମପ୍ରାପ୍ତି-ଉଦ୍ଦେଶ୍ୟରେ ବିପ୍ର 'ଶ୍ୟାସ୍ୟାଶ୍ୱ' ମନ୍ତ୍ରଦ୍ରଷ୍ଟା ଋଷିରେ ପରିଣତ ହୋଇଥିଲେ । 'ସୁକନ୍ୟା'ଙ୍କ ସ୍ୱାମୀଭକ୍ତିରେ ମୁଗ୍ଧ ହୋଇ ଅଶ୍ୱିନୀକୁମାର ମହର୍ଷି 'ଚ୍ୟବନ'ଙ୍କୁ ନବଯୌବନ ପ୍ରଦାନ କରିଥିଲେ । ପ୍ରିୟତମା 'ଉର୍ବଶୀ'ଙ୍କୁ ହରାଇ ମହାରାଜ ପୁରୁରବା 'ତ୍ରେଧା' ଅଗ୍ନିର ସଂସ୍ଥାପକ ହୋଇ ପାରିଥିଲେ ଏବଂ ଇନ୍ଦ୍ରଙ୍କ ଦ୍ୱାରା ମସ୍ତକ ଛେଦନର ଭୟରେ ଭୀତ ନ ହୋଇ 'ଦଧ୍ୟଙ୍ ଆଥର୍ବଣ' ଅଶ୍ୱିନୀ କୁମାରଙ୍କୁ 'ମଧୁବିଦ୍ୟା'ର ଉପଦେଶ ପ୍ରଦାନ କରିଥିଲେ ।

ବୈଦିକ ସାହିତ୍ୟର ଏପରି ଅନେକ ମନୋରଞ୍ଜକ କାଳ୍ପନିକ କଥାବସ୍ତୁର ମାଧ୍ୟମରେ ପ୍ରାଚୀନ କାଳରେ କାଳ୍ପନିକ କାବ୍ୟର ଧାରା ପ୍ରବାହିତ ହୋଇ, ଭାରତୀୟ ଜନ-ଜୀବନକୁ ଆମୋଦ-ପ୍ରମୋଦମୟ ତଥା ଆଦର୍ଶ ଜୀବନ ଗଠନରେ ସହାୟକ ହୋଇ ପାରିଥିଲା ।

ପରବର୍ତ୍ତୀ କାଳରେ ବୈଦିକ ସାହିତ୍ୟର କାଳ୍ପନିକ କାହାଣୀ ଗୁଡ଼ିକ 'ପୁରାଣ ସାହିତ୍ୟ'ରେ ଭିନ୍ନ ଭିନ୍ନ ରୂପରେ ରୂପାୟିତ ହୋଇ; ବୈଦିକ ଯୁଗରୁ ପରମ୍ପରାକ୍ରମେ ଚଳି ଆସୁଥିବା କାଳ୍ପନିକ କଥା ସାହିତ୍ୟର ଧାରାକୁ ନିରବଚ୍ଛିନ୍ନ ଭାବରେ ଅଗ୍ରସର କରାଇ ସାହିତ୍ୟ କ୍ଷେତ୍ରକୁ ଋଦ୍ଧିମନ୍ତ ତଥା ବିକାଶଶୀଳ କରାଇବାରେ ସାହାଯ୍ୟ କରିଥିଲା ।

ବୌଦ୍ଧ ଯୁଗରେ ଭାରତୀୟ କାଳ୍ପନିକ କଥା ସାହିତ୍ୟ ପାଠକମାନଙ୍କ ସମ୍ମୁଖରେ ନୂତନ ରୂପରେ ପ୍ରତିଭାତ ହେଲା । ଭଦନ୍ତ ଆନନ୍ଦ କୌଶଲ୍ୟାୟନଙ୍କ ମତରେ 'ଜାତକ' କଥା ଗୁଡ଼ିକ ପ୍ରାୟ ଦୁଇ ଅଢ଼େଇ ହଜାର ବର୍ଷର ପ୍ରାଚୀନ । ବୁଦ୍ଧତ୍ୱ ଲାଭ କରିବା ପୂର୍ବରୁ, ବୁଦ୍ଧଦେବଙ୍କୁ ଅନେକ ଯୋନିରେ ଜନ୍ମଗ୍ରହଣ କରିବାକୁ ପଡ଼ିଥିଲା । ସେହି ସମୟର ଘଟଣାବଳୀ 'ପଚ୍ଚୁପ୍ପନ୍ନବତ୍ଥୁ', 'ଅତୀତବତ୍ଥୁ' 'ଅତ୍ଥବଣ୍ଣନା' ଓ 'ସମୋଧାନ' ଆଦି ଚାରି ଭାଗରେ ବିଭକ୍ତ କରି ଗୋଟିଏ ଗୋଟିଏ ସୁନ୍ଦର ଉପଦେଶ ମୂଳକ କାଳ୍ପନିକ ଆଖ୍ୟାୟିକା 'ଜାତକ'ରେ ସନ୍ନିବେଶିତ ହୋଇଛି ।

ସଂସ୍କୃତ ସାହିତ୍ୟରେ କାଳ୍ପନିକ କାବ୍ୟର ଧାରା କାଳିଦାସଙ୍କ ପୂର୍ବବର୍ତ୍ତୀ କବି ଅଶ୍ୱଘୋଷଙ୍କ ଯୁଗରୁ ଆରମ୍ଭ ହୋଇଛି ବୋଲି କୁହାଯାଇ ପାରେ । ତତ୍‌ପରେ କାଳିଦାସ, ଭବଭୂତି, ଶ୍ରୀହର୍ଷ (ରତ୍ନାବଳୀ ଆଦି ନାଟକର ପ୍ରଣେତା) ଦଣ୍ଡୀ,ବିଷ୍ଣୁ ଶର୍ମା ବାଣଭଟ୍ଟ, ବୁଦ୍ଧସ୍ୱାମୀ, କ୍ଷେମେନ୍ଦ୍ର, ସୋମଦେବ (ମହାରାଜ ହାଳଙ୍କ ସଭାପଣ୍ଡିତ ଗୁଣାଢ଼୍ୟଙ୍କ 'ପୈଶାଚୀ' ଭାଷାରେ ରଚିତ "ବୃହତ୍ କଥା"ର ଅନୁକରଣରେ ଲିଖିତ ବୁଦ୍ଧସ୍ୱାମୀଙ୍କ ବୃହତ୍ କଥା ଶ୍ଳୋକ, କ୍ଷେମେନ୍ଦ୍ରଙ୍କ ବୃହତ୍ କଥା ମଞ୍ଜରୀ, ସୋମଦେବଙ୍କ କଥା ସରିତ୍ ସାଗର ରଚିତ ହୋଇଥିଲା ।) ସୁବନ୍ଧୁ, ଶିବଦାସ, ନାରାୟଣ ପଣ୍ଡିତ ଆଦି କବିମାନେ କାଳ୍ପନିକ କାବ୍ୟର ଧାରା ପ୍ରବାହିତ କରିଥିଲେ ।

ଅପଭ୍ରଂଶ ସାହିତ୍ୟର ଆଲୋଚନାରୁ ଜଣାଯାଏ ଯେ, ପ୍ରାୟ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରୁ ଆରମ୍ଭ କରି ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀ ଯାଏ ଉକ୍ତ ସାହିତ୍ୟରେ ଅନେକ କାଳ୍ପନିକ କାବ୍ୟର ଅବତାରଣା କରାଯାଇଥିଲା । ସେଗୁଡ଼ିକ ମଧ୍ୟରେ ସ୍ୱୟମ୍ଭୂ କୃତ 'ପଉମ ଚରିଉ', ପୁଷ୍ପଦନ୍ତ କୃତ 'ଜସହର ଚରିଉ', କନକାମର କୃତ 'କରକଣ୍ଡୁ ଚରିଉ', ହରିଭଦ୍ର କୃତ 'ସନତ୍‌କୁମାର ଚରିଉ' ଆଦି ରଚିତ ହୋଇ, ବୈଦିକ ଯୁଗରୁ ପରମ୍ପରା କ୍ରମେ ଲିଖିତ ହୋଇ ଆସୁଥିବା କାଳ୍ପନିକ କାବ୍ୟର ଧାରାକୁ ଅବ୍ୟାହତ ରଖି ପାରିଥିଲା ।

ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରେ ବ୍ୟାସକବି ସାରଳା ଦାସ ଓଡ଼ିଆ ସାହିତ୍ୟରେ ଏକ ଅଭିନବ ଅଧ୍ୟାୟ ସୃଷ୍ଟି କରିଥିଲେ । ବ୍ୟାସଦେବଙ୍କ ରଚିତ 'ମହାଭାରତ'ର କଥାବସ୍ତୁର ଅବଲମ୍ବନରେ ସେ ଏକ ନୂତନ 'ମହାଭାରତ' ରଚନା କରି ଓଡ଼ିଆ ପାଠକମାନଙ୍କ ସମ୍ମୁଖରେ ପରିବେଷଣ କଲେ । ସେ ମୁଖ୍ୟତଃ ସଂସ୍କୃତ 'ମହାଭାରତ'ର ପ୍ରଧାନ ଚରିତ୍ର ଗୁଡ଼ିକୁ ଗ୍ରହଣ କରି, ବହୁ କାଳ୍ପନିକ ପାତ୍ରପାତ୍ରୀ ତଥା କଥାବସ୍ତୁର ସୂତ୍ରପାତ କଲେ । ତେଣୁ ଓଡ଼ିଆ ସାହିତ୍ୟର କାଳ୍ପନିକ କାବ୍ୟର ଧାରା ତାଙ୍କଠାରୁ ଆରମ୍ଭ ହୋଇ ଖ୍ରୀଷ୍ଟୀୟ ଊନବିଂଶ ଶତାବ୍ଦୀ ଯାଏ ଅବାରିତ ଗତିରେ ବହି ଚାଲିଲା । ଓଡ଼ିଶାର ବହୁ କବି କୋବିଦ ସେହି ଧାରାରେ ନିଜକୁ ଭସାଇ ଦେଇ କାଳ୍ପନିକ କାବ୍ୟର ରଚନାରେ ଓଡ଼ିଆ ସାହିତ୍ୟର ଭଣ୍ଡାରକୁ ସମୃଦ୍ଧ କରିଦେଲେ ।

ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧର କବି ଅର୍ଜୁନ ଦାସ 'ରାମବିଭା' ନାମକ ଏକ ପ୍ରଖ୍ୟାତ ରାମ କାବ୍ୟ ରଚନା କରିଥିଲେ ମଧ୍ୟ 'କଳ୍ପଲତା' ନାମକ ଆଉ ଖଣ୍ଡିଏ କାଳ୍ପନିକ କାବ୍ୟ ତାଙ୍କ ଅମର ଲେଖନୀରୁ ନିସୃତ ହୋଇଛି । ଛନ୍ଦୋବଦ୍ଧ

ଓଡ଼ିଆ କାଳ୍ପନିକ କାବ୍ୟ ରୂପେ ଉକ୍ତ 'କଳ୍ପଲତା'ଟିକୁ ପ୍ରଥମ ସ୍ଥାନ ଦିଆ-ଯାଇଥାଏ ।

ଗନ୍ଧର୍ବ ବସନ୍ତକ ଓ ସୁରସୁନ୍ଦରୀ ସୁରେଖା ଦେବସଭାରୁ ଇନ୍ଦ୍ରଙ୍କ ଦ୍ୱାରା ଅଭିଶାପ ପାଇ,ମର୍ତ୍ତ୍ୟପୃଷ୍ଠରେ ଯଥାକ୍ରମେ ମଙ୍ଗଳ ଦେଶର ରାଜକୁମାର ଅମରଶିଖର ତଥା କର୍ଣ୍ଣାଟ ଦେଶର ରାଜକୁମାରୀ କଳ୍ପଲତା ନାମରେ ଜନ୍ମ ଗ୍ରହଣ କଲେ । କୃଷ୍ଣା-ବେଣୀ ନଦୀ ତୀରବର୍ତ୍ତୀ ଯୋଗୀ ଜଙ୍ଗମଙ୍କ ସାହାଯ୍ୟରେ ଅମରଶିଖର ଓ କଳ୍ପଲତା ମଧ୍ୟରେ ପ୍ରେମ ବୃଦ୍ଧି ପାଇଲା । ସ୍ୱା' ମଧ୍ୟରେ କୁମାରୀର ବିବାହ ଗୌଡ଼ ଦେଶର ରାଜକୁମାରଙ୍କ ସହିତ ନିଶ୍ଚିତ ହୋଇଯାଆନ୍ତେ; ଠିକ୍ ବିବାହ ପୂର୍ବରୁ କୁମାରୀ କଳ୍ପଲତା ଆତ୍ମହତ୍ୟା କଲା ।

ଏ ସମ୍ବାଦ ଶୁଣିବା ମାତ୍ରେ ଅମରଶିଖର ପ୍ରଥମେ ବିବ୍ରତ ହୋଇ ପଡ଼ିଲା ଏବଂ ପରେ ଯୋଗୀ ଜଙ୍ଗମଙ୍କ ପ୍ରଦତ୍ତ ମନ୍ତ୍ର ବଳରେ କୁମାରୀକୁ ବଞ୍ଚାଇ ଦେଇ ତା' ସହିତ ବିବାହ କଲା ।

ଦିନେ କୁମାର କୁମାରୀ ଜଳକ୍ରୀଡ଼ା କରୁଥିବା ସମୟରେ ନାଗକନ୍ୟା ମାନେ ଅମରଶିଖରକୁ ଜଳରୁ ଅପହରଣ କରିନେଲେ । ସ୍ୱାମୀଙ୍କର ଅକାଳ ବିୟୋଗରେ କଳ୍ପଲତା କୁଳପ୍ରଥା ଅନୁସାରେ ଅଗ୍ନି ପ୍ରବେଶ କରିବାକୁ ପ୍ରସ୍ତୁତ ହୋଇ ପୁଷ୍କରିଣୀରେ ସ୍ନାନ କରିବା ନିମିତ୍ତ ପ୍ରବେଶ କରନ୍ତେ, ହଠାତ୍ କୁମାର ଅମରଶିଖର ଜୀବିତା-ବସ୍ଥାରେ ଜଳରୁ ବାହାରି ଆସିଲେ । ଏହା ଦେଖି ସମବେତ ପରିବାରବର୍ଗ ତଥା ରାଜଦୁଲଣୀ କଳ୍ପଲତା ଆନନ୍ଦରେ କୁମାରଙ୍କୁ ଆଲିଙ୍ଗନ କଲେ ।

ଏହି କଳ୍ପନିକ କଥାବସ୍ତୁର ଅବଲମ୍ବନରେ ଅର୍ଜୁନ ଦାସ ତେରଟି ଛନ୍ଦରେ କଳ୍ପଲତା ଶୀର୍ଷକ କାବ୍ୟଟିକୁ ଲେଖିଛନ୍ତି । 'ରାମ ବିଭା' କାବ୍ୟ ପରି କବି 'କଳ୍ପଲତା'ରେ ଶ୍ରୀ ଜଗନ୍ନାଥଙ୍କ ବିଭିନ୍ନ ବେଶ ଓ ଧୂପ ଆଦିର ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ବଲିହ, କାଷେଣି, ପରିଘାଣ୍ଡି, ଓଲଗମେଲାଇ, ମହୁଂଆଳୀ, ଝେରାପାଡ଼ି, ଚଡ଼ାଉ, ଧୁଂଆଂଧୁଂଇଂ, ଧାଣ୍ଡକାରେ, ପ୍ରକମ୍ପ, ଲୁଲନ୍ତି,ଧଦୋଳ, ଅଗରନ୍ତ, ଚଡ଼ପ, ପଇଲମ୍, ପାଏଡ଼ା, ପ୍ୟେଘାନ୍ତି, ଛତ୍ରମ, ତରାଇ, କେରୁଆଳ, ସଞ୍ଚାନ୍ତି, ନିଉଡ଼ିଲା ଆଦି ପ୍ରାଚୀନ ଶବ୍ଦର ପ୍ରୟୋଗ କରିବା ସଙ୍ଗେ ସଙ୍ଗେ 'ଷ'କୁ ଖ, 'କ୍ଷ'କୁ ଛ, 'ଛ'କୁ କ୍ଷ ଓ 'ଳ'କୁ ଡ଼ ଭାବରେ ଉଚ୍ଚାରଣ କରି, କାବ୍ୟର ମହତ୍ତ୍ୱ ବୃଦ୍ଧି କରିଛନ୍ତି ।

କାବ୍ୟରେ ବ୍ୟବହୃତ କେତୋଟି ପଦ :—

“ସଙ୍ଗୀତ ବାଦ୍ୟନ୍ତ୍ର ଛୁଂଇ । ସବୃନ୍ତ ଓଲଗ ମେଲ୍ଲଇ ॥

× × ×

ଶୁଣି ବସନ୍ତେଙ୍କ ଅଇଲ୍ଲ । ପ୍ରବମା ଓଲଗି ସୁତଲା ॥

× × ×

ଯେତକା ଅବଗୁଣ ତାହାର । କେବେହେଁ ନ ଛୁଅଂଇ ନାଶ ॥

× × ×

ଦୁହେଁ ପ୍ରଳମ୍ବ ହୋଇଲେକ ଯାଇଂ । ଅସନ ଦେଇ ସମ୍ଭାଷ୍ୟେ କହ୍ନେ ॥

× × ×

କଟେକ ମୁରଟ୍ଟ କସଇଲେ ରଏ । ଆପଣେ ଅସ୍ତ୍ରାନେ ବଲେଙ୍କ ଭଜନ୍ତେ ॥

× × ×

ତେଣ୍ଟକାରେ ଜୀବନ୍ତ ଜୀବନ୍ତା ଧଇନ୍ତି । ଅବଧାନ ଦାନ ଦେଇ ବଚନ କରନ୍ତି ॥

× × ×

କ୍ଷତ୍ର ସଖି ଶଇଡ଼ ମେଲିଆଣ ଖେଡ ଉଙ୍ଗେ ବଡ଼ ଖୋଭ ।
ପଖାଳ ଭାତେ ଶୋଷ ନ ଭାଗଇ ଆଜ ବଡ଼ ପିବାସ ॥

× × ×

ମାହାଦେଇ ଅପରୁଡ଼ ହୋଇଲେ । ଝଡ଼ା ମୁଦୁସୁଲି ରଇ ବୋଇଲେ ॥

× × ×

ଉଠ ଆପଣେ ଶ୍ରୀଅଙ୍ଗ ମାଣ୍ଡ଼ମାଂ । ମୁଖୁଂ ପିନ୍ଧୁଂଆ ଦୋପଟୀ କାଢ଼ିମା” ॥ *

---

* କଳ୍ପଲତା ସମ୍ପାଦକ—ଶ୍ରୀ କେଦାର ନାଥ ମହାପାତ୍ର

ଧ୍ୱନିରୁ ପ୍ରଚଳିତ ସଂସ୍କୃତ କାବ୍ୟ ଗୁଡ଼ିକର ଭାବଧାରା ଓ ଶୈଳୀର ଅବଲମ୍ବନରେ 'କଳ୍ପଲତା' କାବ୍ୟଟି ଲେଖା ଯାଇଥିଲେ ହେଁ, ଏଥିରେ ନାୟିକାର ନଖ ଶିଖ ଯୌବନ ବର୍ଣ୍ଣନା, ସୁରତ କାଳୀନ ଆଲିଙ୍ଗନ ଚୁମ୍ବନାଦି ତଥାକଥିତ ଅଶ୍ଳୀଳତାର ଅବତାରଣା କରାଯାଇ ନାହିଁ। କିନ୍ତୁ ଶ୍ରୀହର୍ଷଙ୍କ ନୈଷଧୀୟ କାବ୍ୟରେ ବର୍ଣ୍ଣିତ ହଂସ ସହଯୋଗରେ ନାୟକ ନାୟିକାଙ୍କ ମିଳନର ସୂତ୍ରପାତ ହେଲା ପରି, ଯୋଗୀ ଜଙ୍ଗମଙ୍କ ସାହାଯ୍ୟରେ କଳ୍ପଲତା ଓ ଅମରଶିଖରର ମିଳନ ସମ୍ଭବ ହୋଇଛି। ଅବଶ୍ୟ କବି ଅର୍ଜୁନ ଦାସ ସ୍ୱ କାବ୍ୟର କଥାବସ୍ତୁକୁ ଆଦର୍ଶ ତଥା ରୋଚକ କରିବା ଲାଗି, ସ୍ଥଳବିଶେଷରେ ଅସ୍ୱାଭାବିକ, ଅତିମାନବୀୟ ତଥା ଅତିଶୟୋକ୍ତି ମୂଳକ ଘଟଣାବଳୀରେ କାବ୍ୟଟିକୁ ଅତିରଞ୍ଜିତ କରିଛନ୍ତି। ଯାହାହେଉ, କବି ଅର୍ଜୁନ ଦାସ ଛନ୍ଦୋବଦ୍ଧ ଓଡ଼ିଆ କାଳ୍ପନିକ କାବ୍ୟଧାରାର ପ୍ରଥମ ପ୍ରବର୍ତ୍ତକ ହୋଇଥିବାରୁ, ତାଙ୍କର ପଦାଙ୍କ ଅନୁସରଣ କରି ପରବର୍ତ୍ତୀ କାଳୀନ ବହୁ କବି ଅଗ୍ରସର ହୋଇଛନ୍ତି।

କବି ନରସିଂହ ସେଣ ଓଡ଼ିଆ ସାହିତ୍ୟରେ ଆଦୌ ଅପରିଚିତ ନୁହନ୍ତି। ବିଶେଷତଃ ସେ ଜଣେ ପ୍ରଖ୍ୟାତ ପଣ୍ଡିତ ବଂଶରେ ଜନ୍ମ ଗ୍ରହଣ କରିଥିବାରୁ, ସୂର୍ଯ୍ୟବଂଶର ଗଜପତି ରାଜାମାନଙ୍କ ସହିତ ତାଙ୍କ ବଂଶର ଘନିଷ୍ଠ ସମ୍ପର୍କ ଥିଲା। ତାଙ୍କ ପିତାଙ୍କ ନାମ ତପନ ସେଣ ଓ ପିତାମହଙ୍କ ନାମ ଉମାପତି ସେଣ। ଉଭୟ ପିତା ଓ ପିତାମହ ଧର୍ମଶାସ୍ତ୍ରଜ୍ଞ ଥିଲେ; ବିଶେଷତଃ ଆୟୁର୍ବେଦ ବିଦ୍ୟାରେ ପ୍ରବୀଣ ଥିଲେ। କବି ନରସିଂହ ସେଣଙ୍କ ପୁତ୍ର ବିଶ୍ୱନାଥ ସେଣ ମଧ୍ୟ 'ପଥ୍ୟାପଥ୍ୟ ବିନିଶ୍ଚୟ' ଓ 'ଚିକିତ୍ସାର୍ଣ୍ଣବ' ପ୍ରଭୃତି ଗ୍ରନ୍ଥ ପ୍ରଣୟନ କରି ଉତ୍କଳୀୟ ସୁଧୀ ସମାଜରେ ଜଣେ ପ୍ରଖ୍ୟାତ ଚିକିତ୍ସକ ରୂପେ ଖ୍ୟାତି ଅର୍ଜନ କରିଥିଲେ।

ନରସିଂହ ସେଣଙ୍କ ରଚିତ 'ପରିମଳା' କାବ୍ୟ ଓଡ଼ିଆ କାଳ୍ପନିକ କାବ୍ୟ ଜଗତରେ ଏକ ଅଭିନବ ଗ୍ରନ୍ଥ। କବି କାଳ୍ପନିକ କାବ୍ୟଟିକୁ ବହୁ ଅତିମାନବୀୟ ଘଟଣାବଳୀରେ ସୁସଜ୍ଜିତ କରିବା ସଙ୍ଗେ ସଙ୍ଗେ ଆଦିରସର ଉଦ୍‌ବେଳିତ ଉତ୍ସରେ ରସାଣିତ କରିଛନ୍ତି। କାବ୍ୟର ବିଷୟବସ୍ତୁ ସଂକ୍ଷେପରେ ପ୍ରଦତ୍ତ ହେଲା।

"ଧର୍ମବର୍ଦ୍ଧ ନଗରୀର ରାଜା ବିକ୍ରମ କେଶରୀଙ୍କ ରାଣୀ ସୁଶୀଳା ମହାଦେଈଙ୍କ ଗର୍ଭରେ ମକରକେତୁ ଜାତ ହୋଇ, ବାଲ୍ୟ କୈଶୋର ପରେ ଯୌବନରେ ପଦାର୍ପଣ କରନ୍ତେ, କାଞ୍ଚି ନଗର ଅଧିପତି ବୀରଭଦ୍ରଙ୍କ ପଦ୍ମାସୁନ୍ଦରୀ ପଞ୍ଚଦଶ ବର୍ଷୀୟା କନ୍ୟା ପରିମଳା ସହିତ ତାଙ୍କର ବିବାହ ସମ୍ବନ୍ଧ ହେବାର ସ୍ଥିରୀକୃତ ହେଲା।

ଇତି ମଧ୍ୟରେ ନବ-ଯୌବନା ପରିମଳାଙ୍କ ଅଙ୍ଗସଙ୍ଗ ଲଭ କାମନାରେ ଗନ୍ଧର୍ବ ଚିତ୍ରରଥ କନ୍ୟାନ୍ତଃପୁରର ଦାସୀ ପରିଚାରିକାମାନଙ୍କୁ ମୋହିତ କରାଇ ପରିମଳାକୁ ଉଠାଇ,ପୂର୍ବଜନ୍ମର ଚରିତ ବର୍ଣ୍ଣନା କରି,ତା' ସହିତ ସୁରତ କେଳୀରେ ମଜ୍ଜିଗଲା । ତା'ପରେ ପ୍ରତିଦିନ ସେହିପରି ଭାବରେ ପରିମଳା ଚିତ୍ରରଥର ରଥରେ ଆରୋହଣ କରି ସ୍ୱର୍ଗପୁରରେ କାମକ୍ରୀଡ଼ା କରିବା ଲାଗି ଗମନ କରେ ଏବଂ ରାତ୍ର ପାହିବା ପୂର୍ବରୁ ଫେରି ଆସେ । ଯା' ମଧ୍ୟରେ ଚିତ୍ରରଥର ଅନୁରୋଧରେ, ସ୍ୱର୍ଗବାର୍ତ୍ତା ନ ଜଣାଇଲେ ତା'ର ବିବାହିତ ସ୍ୱାମୀଙ୍କୁ ଅଙ୍ଗ ଛୁଆଁଇ ନ ଦେବା ଲାଗି ପରିମଳା ପ୍ରତିଜ୍ଞା କଲା ଏବଂ ତଦନୁଯାୟୀ ବିବାହ ପୂର୍ବରୁ ପରିମଳା ନିଜ ସଖୀ ଦ୍ୱାରା ତା'ର ମନୋଭାବ ଭାବି ସ୍ୱାମୀ ଆଗରେ ଜଣାଇ ଦେଲା ।

ବିବାହ ପରେ ଉଭୟେ ପୃଥକ୍ ଶଯ୍ୟାରେ ଶୋଇ ଅସହ୍ୟ ବିରହତାପ ଭୋଗ କଲେ ଏବଂ ଜ୍ଞାନାନନ୍ଦ ନାମକ କୌଣସି ଏକ ଯୋଗୀଙ୍କ ସାହାଯ୍ୟରେ ମକର-କେତୁ ଭ୍ରମର ରୂପରେ ଚିତ୍ରରଥର ରଥରେ ସ୍ୱର୍ଗକୁ ଗମନ କରି; ସେଠାରୁ ପାରିଜାତ ଆଣି ପ୍ରାଣପ୍ରିୟାକୁ ଦେଖାଇ, ତା'ର ଅଙ୍ଗସ୍ପର୍ଶ କରିବାର ଅଧିକାର ଲାଭ କଲା । ସୁନ୍ଦର ଗୁଣବାନ୍ ସ୍ୱାମୀଙ୍କ ସ୍ନେହ ପାଇ ପରିମଳା ଗନ୍ଧର୍ବଙ୍କୁ ସମ୍ପୂର୍ଣ୍ଣ ଭୁଲିଗଲା ।

ଶାପ ବିମୋଚନ ପରେ ତିଲୋତ୍ତମା (ପରିମଳାର ସ୍ୱର୍ଗୀୟ ନାମ) ଇନ୍ଦ୍ରଙ୍କ ଦୂତ ଦ୍ୱାରା ସ୍ୱର୍ଗକୁ ଗଲାବେଳେ, ମକରକେତୁକୁ ଲିଖିତ ସୂଚନା ଦେଇଗଲା । ସେହି ଅନୁସାରେ କୁମାର ମଳୟ ଶୈଳକୁ ଯାଇ, ସେଠାରୁ ମଧ୍ୟ ପ୍ରାଣପ୍ରିୟାର ପରୋକ୍ଷ ସଙ୍କେତରେ ଦଶମାସ ପରେ ସ୍ୱର୍ଗଧାମରେ ଉପସ୍ଥିତ ହୋଇ, ତିଲୋତ୍ତମା ସହିତ ମିଳିତ ହେଲା । ଚିତ୍ରରଥ ଯା' ମଧ୍ୟରେ ସନ୍ଦେହ କରି ଦିନେ ମାୟା ରୂପରେ ମକର-କେତୁକୁ ଅପହରଣ କରି ନେଇ, ସମୁଦ୍ରରେ ଫିଙ୍ଗି ଦେଲା ଏବଂ ରତ୍ନାକର ନାମକ ଜଣେ ବୋଇତାଳ ତା'ର ପ୍ରାଣରକ୍ଷା କରି ଦ୍ୱୀପକୁ ଘେନିଗଲା ।

ତତ୍ପରେ କୁମାର ଅନେକ ଦିନଧରି ତପସ୍ୟା କଲେ,ପରିଶେଷରେ ଇନ୍ଦ୍ରଙ୍କ ଆଶୀର୍ବାଦରୁ ପୁଣି ଉଭୟ କୁମାର ମକରକେତୁ ଓ ପରିମଳାର ମିଳନ ହେଲା ଏବଂ ସେମାନେ ମର୍ତ୍ତ୍ୟକୁ ଫେରିଆସି ନିଜ ପିତାମାତାଙ୍କ ଗହଣରେ କାଳଯାପନ କଲେ ।

କବି ନରସିଂହ ସେଣ ପରିମଳା କାବ୍ୟରେ ଅନେକ ପ୍ରାଚୀନ ଗ୍ରନ୍ଥ ଶୈଳୀର ବ୍ୟବହାର କରିଛନ୍ତି ଏବଂ ଓଡ଼ିଆ କବି ଜୟଦେବ ଓ କବିଚନ୍ଦ୍ର ରାୟ

ଢ଼ିବାକର ମିଶ୍ର (ଅଭିନବ ଗୀତଗୋବିନ୍ଦର ପ୍ରଣେତା)ଙ୍କ ମାର୍ଗ ଅନୁସରଣ କରି ପ୍ରତ୍ୟେକ ଛାନ୍ଦର ନାମକରଣ କରିଛନ୍ତି ।

କବିଙ୍କ ସମୟ ଅର୍ଥାତ୍ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ଓଡ଼ିଆ ସାହିତ୍ୟିକ ଗୋଷ୍ଠିରେ ପ୍ରଚଳିତ ପ୍ରାଚୀନ ଓଡ଼ିଆ ଶବ୍ଦର ଅନୁସନ୍ଧାନରୁ ଜଣାଯାଏ ଯେ, ପରିମଳା କାବ୍ୟରେ — "ପ୍ରିତ୍ତ, ପାଦାନ୍ତ, ଆଞ୍ଜୋବନ, ପର୍ଯ୍ୟାସ, ଅପଛର, ଧର୍ତ୍ତର୍ଣ୍ଣି, ଉପାମ, ଚାମ୍ବୋଳ, ଭେବଳ, ସିଙ୍ଘାଣୀ, ଛତ୍ରମ, ସବୃନ୍ତ, କେହୁସି, ଡେହେଙ୍ଗ୍ରେକ, ଧଉନ୍ତ, ଅହନ୍ତାପ୍ୟେ, ସମ୍ପୋଡ଼େ, କାମକଇ, ପଦପଞ୍ଚ ପାପ୍ୟେ ଆଦି ପ୍ରାଚୀନ ପ୍ରୟୋଗର ଅଭାବ ପରିଦୃଷ୍ଟ ହୁଏ ।

ପରିମଳା କାବ୍ୟରୁ ଓଡ଼ିଆ ସମାଜର ପାଞ୍ଚପର୍ବ, ଆଚାର ବିଚାର, ପୂଜା ପାର୍ବଣ ଆଦି ସମ୍ବନ୍ଧରେ ଅନେକ ପ୍ରତିବିମ୍ବ ଦେଖିବାକୁ ମିଳେ । ବିଶେଷତଃ ଓଡ଼ିଆ ଘରର ବିଭାଘର ଉତ୍ସବର ମଙ୍ଗଳା, ବାଟ ବରଣ, ପଞ୍ଚୁଗ୍ରାସୀ, ଲାଜାହୋମ ଆଦି ବହୁ ଆନୁସଙ୍ଗିକ ମାଙ୍ଗଳିକ କୃତ୍ୟର ସଜୀବ ବର୍ଣ୍ଣନା ପରିମଳା କାବ୍ୟରୁ ସୁନ୍ଦର ଭାବରେ ମିଳିଥାଏ ।

ମୁନି ଋଷିଙ୍କ ସାହାଯ୍ୟରେ କାବ୍ୟର ନାୟକ ନାୟିକାକୁ ଲାଭ କରିବାରେ ସଫଳ ହେଉଥିବାର ଘଟଣା ଓଡ଼ିଆ ସାହିତ୍ୟରେ ବହୁଳ ଭାବରେ ଗୃହୀତ ହୋଇଛି । କିନ୍ତୁ ସନ୍ତୁଷ୍ଟତଃ ଅତିମାନବୀୟ ଘଟଣାବଳୀର ବର୍ଣ୍ଣନା ପ୍ରସଙ୍ଗରେ ଲୌକିକ ଅପ୍ରା-ସଙ୍ଗିକତାକୁ ଏଡ଼ାଇ କାବ୍ୟିକ ଚରିତ୍ର ଅକ୍ଷୁଣ୍ଣ ରୂପରେଖର ପରିବେଷଣ ଲାଗି, କବି-ମାନେ କାବ୍ୟରେ ମୁନିଋଷିଙ୍କ ଅଲୌକିକ ଶକ୍ତିର ବର୍ଣ୍ଣନା କରିଥା'ନ୍ତି । ବିଶେଷତଃ ଖ୍ରୀଷ୍ଟୀୟ ୯ମ ୧୦ମ ଶତାବ୍ଦୀରୁ ଆରମ୍ଭ କରି ୧୬ଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାରେ ତାନ୍ତ୍ରିକମାନଙ୍କର ଅଖଣ୍ଡ ପ୍ରଭୁତ୍ୱ ରହିଥିବାରୁ, କବିମାନଙ୍କ କାବ୍ୟରେ ତା'ର ଠିକ ପ୍ରତିଫଳନ ହେବା ସ୍ୱାଭାବିକ । ତେଣୁ ଅର୍ଜୁନ ଦାସଙ୍କ 'କଳ୍ପଲତା' କାବ୍ୟଠାରୁ ଆରମ୍ଭ କରି ଊନବିଂଶ ଶତାବ୍ଦୀର ଶେଷ ଭାଗରେ ରଚିତ କାବ୍ୟ 'ସୁରହମାଳା' (ଡଗିରଆ ଅଞ୍ଚଳର କବି ନଟବରଙ୍କ ଲିଖିତ) ପର୍ଯ୍ୟନ୍ତ ପ୍ରାପ୍ତ ଅଧିକାଂଶ କାବ୍ୟର କବିମାନେ ଜ୍ଞାନାନନ୍ଦ, ଯୋଗାନନ୍ଦ, ଜଙ୍ଗମ, ସର୍ବେଶ୍ୱର ଯୋଗୀ, ଅଗ୍ନିଋଷି ଆଦି ବହୁ ଅଭିଚାରକର୍ମୀ ତାନ୍ତ୍ରିକ ଯୋଗୀମାନଙ୍କ ସମାବେଶ କରାଇ, ଘଟଣାବଳୀରେ ବର୍ଣ୍ଣିତ ଅଲୌକିକତାର ସମର୍ଥନ କରି କାବ୍ୟଗୁଡ଼ିକୁ ଅସ୍ୱାଭାବିକ ଦୋଷରୁ ମୁକ୍ତ କରିଛନ୍ତି । ସେହି ଅନୁସାରେ 'ପରିମଳା' କାବ୍ୟରେ ମଧ୍ୟ ଜ୍ଞାନାନନ୍ଦଙ୍କ ମନ୍ତ୍ରବଳରେ

ନାୟକ ମକରକେତୁର ଭ୍ରମର ରୂପ ଧାରଣ କରି ସ୍ୱର୍ଗ ଗମନ ଏବଂ ଅଗ୍ନିଋଷିଙ୍କ ମନ୍ତ୍ରପୂତ ପାଦୁକା ବଳରେ ପୁନଃ ସ୍ୱର୍ଗ ଗମନ ଆଦର ବର୍ଣ୍ଣନା କରାଯାଇଛି । କବି ଅର୍ଜ୍ଜୁନ ଦାସ ଓ ନରସିଂହ ସେଣ ଉକ୍ତ ମାର୍ଗର ଅନୁସରଣ କରିବା ଫଳରେ ପରବର୍ତ୍ତୀ କବିମାନେ ସ୍ୱ ସ୍ୱ କାବ୍ୟରେ ଆଗ୍ରହର ସହିତ ତାନ୍ତ୍ରିକସିଦ୍ଧ ଯୋଗୀମାନଙ୍କ ଅବତାରଣା କରିଛନ୍ତି ।

ଆହୁରି ମଧ୍ୟ ଆଲୋଚନା କଲେ ଜଣାଯାଏ ଯେ, ଅପ୍‌ସରା ଓ ଗନ୍ଧର୍ବମାନେ ସ୍ୱର୍ଗରୁ ଅଭିଶାପ ପାଇ ରାଜକୁମାର ଓ ରାଜକୁମାରୀ ରୂପେ ଜନ୍ମ ଗ୍ରହଣ କରି ମର୍ତ୍ତ୍ୟ-ଲୋକରେ ପତିପତ୍ନୀ ବା ପ୍ରେମିକ ପ୍ରେମିକା ରୂପରେ ପୂର୍ବ ଜନ୍ମର ଅଭିଳଷିତ କାମନାର ଚରିତାର୍ଥ କରିଛନ୍ତି । କବି ଅର୍ଜ୍ଜୁନ ଦାସ ବସନ୍ତକ ଗନ୍ଧର୍ବ ଓ ଅପ୍‌ସରା ସୁରେଖାର ମର୍ତ୍ତ୍ୟଲୋକରେ ଜନ୍ମ ଗ୍ରହଣର ବୃତ୍ତାନ୍ତ ଉଲ୍ଲେଖ କରି 'କଳ୍ପଲତା' କାବ୍ୟର ରୂପରେଖ ପ୍ରସ୍ତୁତ କରିଥିବା ବେଳେ; ନରସିଂହ ଶେଣ କେବଳ ଅପ୍‌ସରା ତିଳୋତ୍ତମାକୁ ମର୍ତ୍ତ୍ୟରେ ଜନ୍ମ ଗ୍ରହଣ କରାଇ ମାନବୀୟ ସୁଖ ଭୋଗର କଳ୍ପନା କରିଛନ୍ତି ଏବଂ କଳ୍ପଲତାରେ ବର୍ଣ୍ଣିତ ମର୍ତ୍ତ୍ୟର ସୁଖଭୋଗ ପରେ ସୁରେଖା ଓ ବସନ୍ତକର ସ୍ୱର୍ଗ ଗମନ ସମ୍ବନ୍ଧରେ କୌଣସି ଆଲୋଚନା କରାଯାଇ ନ ଥିଲେ ହେଁ, 'ପରିମଳା'ରେ ବର୍ଣ୍ଣିତ ନାୟିକା ସ୍ୱର୍ଗର ଅପ୍‌ସରା ତିଳୋତ୍ତମା ମର୍ତ୍ତ୍ୟରେ ଜନ୍ମ ଗ୍ରହଣ କରି ମଧ୍ୟ ପ୍ରତିଦିନ ଚିତ୍ରରଥ ଗନ୍ଧର୍ବ ସହିତ କାମକ୍ରୀଡ଼ା ଉଦ୍ଦେଶ୍ୟରେ ସ୍ୱର୍ଗ ଗମନ କରୁଥିଲେ ଏବଂ ଶାପ ବିମୋଚନର ଅବଧି ପରେ ସେ ସ୍ୱର୍ଗ ଗମନ କରିଥିଲେ ହେଁ, ମର୍ତ୍ତ୍ୟର ଭୋଗ ବିଳାସ ପ୍ରତି ତା'ର ମମତା ତୁଟି ନ ଥିଲା । ତାହାରି ଫଳରେ, ସେ ନାନା ଉପାୟ ଅବଲମ୍ବନ କରି ସ୍ୱର୍ଗରୁ ପୁଣି ମର୍ତ୍ତ୍ୟକୁ ଫେରି ଆସିଛି ।

କବି ନରସିଂହ ଶେଣ 'ପରିମଳା' କାବ୍ୟର କଥବସ୍ତୁଟିକୁ 'କଳ୍ପଲତା'ର କଥାବସ୍ତୁ ପରି ସରଳ ନ କରି; ଅନେକ ଅତିମାନବୀୟ ଘଟଣାବଳୀର ମାଧ୍ୟମରେ ଜଟିଳରୁ ଜଟିଳତର ଶୈଳୀରେ ପାଠକମାନଙ୍କ ସମ୍ମୁଖରେ ପରିବେଷଣ କରିଛନ୍ତି । ଅବଶ୍ୟ ସେ ପ୍ରକାର କଳ୍ପନା ପାଠକ ମନରେ କୌତୂହଳ ସୃଷ୍ଟି କରୁଥିଲେ ହେଁ, ସଚେତନ ପାଠକ ମହଲରେ କବିଙ୍କ ଅଲୌକିକ ପ୍ରତିଭା ସମ୍ବନ୍ଧରେ ସନ୍ଦେହ ଜାତ କରାଏ ।

## ଓଡ଼ିଆ କାଳ୍ପନିକ କାବ୍ୟର କେତେକ ବୈଶିଷ୍ଟ୍ୟ :—

ମଧ୍ୟଯୁଗୀୟ ଓଡ଼ିଆ କାଳ୍ପନିକ କାବ୍ୟ ଗୁଡ଼ିକର ଆରମ୍ଭରେ କବିମାନେ ସର୍ବପ୍ରଥମେ ନିଜନିଜର ଇଷ୍ଟଦେବତାଙ୍କୁ ସ୍ମରଣ କରି କେତେପଦ ରଚନା କରି-

ଥା'ନ୍ତି । ଏହି ପ୍ରସଙ୍ଗରେ ରାମ, କୃଷ୍ଣ, ନୃସିଂହ, ଶ୍ରୀ ଜଗନ୍ନାଥ, ବଳଦେବ, ଗଣେଶ ଆଦି ଦେବ ତଥା ସରସ୍ୱତୀ, କମଳା, ତାରା, ଭଗବତୀ, ବିରଜା, ମଙ୍ଗଳା ଆଦି ଦେବୀଙ୍କ ସ୍ତୁତି କାବ୍ୟର ମଙ୍ଗଳାଚରଣରେ ସ୍ଥାନ ପାଇଥାଏ । ତତ୍ପରେ ନାୟକ ନାୟିକାଙ୍କ ଜନ୍ମ ପ୍ରସଙ୍ଗ ବର୍ଣ୍ଣିତ ହୋଇଥାଏ । ଏହି ପ୍ରସଙ୍ଗରେ ସାଧାରଣତଃ ନାୟକ ନାୟିକାମାନଙ୍କୁ ରାଜକୁମାର ଓ ରାଜକୁମାରୀ ରୂପେ ବର୍ଣ୍ଣନା କରିବା ମଧ୍ୟଯୁଗୀୟ କବି-ମାନଙ୍କର ଏକ ମତରୂପେ ଗୃହୀତ ହୋଇଛି । ଅବଶ୍ୟ ଗୋଟିଏ ' ଦୁଇଟି ସ୍ଥାନରେ ଉପବାଦ ରହିଛି । ଅନ୍ୟଥା ସବୁ କାବ୍ୟରେ ସେମାନଙ୍କୁ ରାଜକୁମାର କେତେକ ସ୍ଥଳରେ ଅବଶ୍ୟ ରାଜା ନାୟକ ରୂପେ ବର୍ଣ୍ଣିତ ହୋଇଥିବାର ଦେଖାଯାଏ) ରାଜକୁମାରୀ ଭାବରେ ଚିତ୍ରଣ କରାଯାଇଛି । ନାୟକ ନାୟିକାଙ୍କ ଜନ୍ମ ପୂର୍ବରୁ ତାଙ୍କ ପିତାମାତା, ରାଜ୍ୟ ଓ ନଗର ବର୍ଣ୍ଣନା ପ୍ରାୟ ପ୍ରତ୍ୟେକ କାବ୍ୟରେ ରହିଛି ।

"ଶୁଣହେ ସୁଜନେ ରସ କର୍ଣ୍ଣ ମନ ଲୋଭ ।
ରତ୍ନାକର ମଧ୍ୟରେ ସିଂହଳ ଦ୍ୱୀପ ଶୋଭ ।
କହିବାର ନୋହେ ସେ କଟକ ଛଟକକୁ ।
ରତନ ଝଟକ ହସେ ଆନ କଟକକୁ" । ଇତ୍ୟାଦି

(ଲାବଣ୍ୟବତୀ)

× × ×

ପ୍ରବେଶରେ ହଂସବର ଦେଖିଲା ଉଚ୍ଚ ପ୍ରାକାର
ସ୍ଫଟିକ ନିର୍ମିତ ପୁରମାନ ଅଶେଷ
ବିସ୍ତାରଇ ସେ ନଗର ଅବନୀ ପାଇ ଶୃଙ୍ଗାର
କରୁଅଛି ବା ରୁଚିର ହାସ ପ୍ରକାଶ
ପୁଣି ବୋଲେ ହେବ ଏସନ,
କଇଳାସ ଗିରି ଏହୁ ଶିବ ନିଧାନ ॥

ସର୍ବ୍ବ ସଉଧ ସଦନ- ମାନଙ୍କୁ ଇନ୍ଦୁ ସମାନ
ମଣିଲା ହଂସ ରତନ ଅତି ଉଚ୍ଚରୁ
ସୁଧା ଲେପରେ ନିର୍ମିତ ଚିତ୍ର ମୃଗରେ ଅଙ୍କିତ
ଆହ୍ଲାଦ କରେ ଚିତ୍ତ କିରଣ ଭରୁଁ ;

ଦ୍ୱିଜ ମନ ଆନନ୍ଦ ଧରେ,
ବରବ୍ରଣୀ ନାରୀ ମନ ମଥନ କରେ”। ଇତ୍ୟାଦି

(ରସ ଲହରୀ)

× × ×

ଚମ୍ପା ସେ ଋସାପୋଷା ଶିରେ ବନ୍ଧି
ଶିବ ଡମ୍ବରେ ଗୁନ୍ଥରେ ସ୍ନେହି।
ଜନ ମନୋହର ସୁବାସ ଅଛି
ଭ୍ରମର ଅବଲମ୍ବ ନାହିଁ କଚ୍ଛି।
ଦେଖିବାର ଯାହା ରୁଚିର ରୁଚି
ଶଙ୍କା ଲଭି ଲଙ୍କା ଅଳକା କାନ୍ତି।

(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ)

ନଗର ବର୍ଣ୍ଣନା ପରି କାଳ୍ପନିକ ଭାବଂଗୁଣ୍ଠନରେ ନାୟିକାର ଯୌବନ ବର୍ଣ୍ଣନା ବିଶେଷ ସ୍ଥାନ ଅଧିକାର କରେ। ପ୍ରାୟ ସବୁ କାବ୍ୟରେ ନାୟିକାର ଆପାଦମସ୍ତକ ଅଙ୍ଗଶୋଭା ବର୍ଣ୍ଣନାରେ ମଧ୍ୟଯୁଗୀୟ କବିମାନେ ଶତମୁଖ ହୋଇ ପଡ଼ିଛନ୍ତି। ସେମାନଙ୍କ କଳ୍ପନାରେ ନାୟିକାର କେଶରାଶିକୁ ଭ୍ରମର ପଙ୍‌କ୍ତି, କୃଷ୍ଣ-ମେଘମାଳା; ମୁଖକୁ ପଦ୍ମ, ଚନ୍ଦ୍ରମଣ୍ଡଳ ଓ ମଦନ ଦର୍ପଣ; ଭ୍ରୂଲତାକୁ କାମଧନୁ; ଡାଳିମ୍ବ ବୀଜ ସଦୃଶ ଦନ୍ତପନ୍ତି, ତିଳକୁସୁମ ତୁଲ୍ୟ ନାସା, ଅଧର ବିମ୍ବଫଳ ଓ କଦମ୍ବ ପୁଷ୍ପ (ଅଧର ସୁଫଳ କଦମ୍ବର ଫୁଲ) ସଦୃଶ; କଞ୍ଜ, ଖଞ୍ଜନ, ଶଫରୀ ତଥା ହରିଣର ଅକ୍ଷି ଯୁଗଳ ପରି ଚକ୍ଷୁ; କମ୍ବୁତୁଲ୍ୟ ଗ୍ରୀବା, ସ୍ୱର୍ଣ୍ଣ କୁମ୍ଭ, ସ୍ୱର୍ଣ୍ଣଗିରି, ମନ୍ଦରଗିରି, ଅମୃତରସ ପୂରିତ ହେମ ଘଟ ଓ ମଦନ ଭଣ୍ଡାର ସଦୃଶ କୁଚଯୁଗଳ, ମଦନ ନିଶ୍ରେଣୀ ତୁଲ୍ୟ ତ୍ରିବଳୀ, ସିଂହକଟି, କାମଦେବର ବେଦିକା ତୁଲ୍ୟ ଜଘନ, ମୃଣାଳନାଳ ତୁଲ୍ୟ ବାହୁ, କୋମଳ ପଲ୍ଲବ, ପଦ୍ମପୁଷ୍ପ ତୁଲ୍ୟ ପାଣି ଯୁଗଳ, ଅଙ୍ଗୁଳି ଚମ୍ପାକଳିକା, ସୁରଙ୍ଗ ଜଳରୁହ ଜିଣା ଗୁରୁ ଚରଣ, ଅର୍ଦ୍ଧଚନ୍ଦ୍ର ସଦୃଶ ନଖ, କରୀବର ଗତି ଜିଣା ଗତି ତଥା କନକ କେତକୀ ଜିଣା କାନ୍ତି ଆଦିର ବର୍ଣ୍ଣନା ସ୍ଥାନ ପାଇଥାଏ। ସ୍ଥଳବିଶେଷରେ ମଧ୍ୟ ବର୍ଣ୍ଣନାର ଅତିଶୟୋକ୍ତି ସାଧାରଣ ପାଠକ ମନରେ ବିରକ୍ତିକର ହୋଇଥାଏ। ନଖ-

ଶିଖ ବର୍ଣ୍ଣନାରେ କେବଳ କବି-ସମାଜ ପରିତୃପ୍ତ ନ ହୋଇ ସ୍ଥଳବିଶେଷରେ ନାୟିକାର ଗୁପ୍ତାଙ୍ଗ ବର୍ଣ୍ଣନାରୁ କ୍ଷାନ୍ତ ହୋଇ ନାହାନ୍ତି ।

ନାୟିକାର ବେଶ ବର୍ଣ୍ଣନା ମଧ୍ୟ କାଳୁନିକ କାବ୍ୟଗୁଡ଼ିକର ଅନ୍ୟତମ ବିଶେଷତ୍ୱ । ଓଡ଼ିଆ କବିମାନେ ସିଂହଳ, କର୍ଣ୍ଣାଟ, ପାଣ୍ଡ୍ୟ, ଗୌଳ, କାଶ୍ମୀର ଆଦି ଦେଶର ନାୟିମାନଙ୍କୁ ଓଡ଼ିଶୀ ବେଶଭୂଷାରେ ସଜାଇ ସ୍ୱ ସ୍ୱ କାବ୍ୟଗୁଡ଼ିକୁ ଉଦ୍ଭାସିତ କରିଛନ୍ତି । ଉଦାହରଣ ସ୍ୱରୂପ କେତୋଟି ବେଶ ବର୍ଣ୍ଣନା ଏଠାରେ ପ୍ରଦତ୍ତ ହେଲା—

"ସୁନାୟି ମାନେ ଝିଲମିଲି ମାଳୀ ।
ବେନି ପାଶେ କଲେ ଉତ୍ତଂସ ଝଳ ।
ଚନ୍ଦ୍ରଚୁମ୍ବା ଚହିଁ, କାହା ମାନସ ହରି ନେଉନାହିଁ ।
(କୋଟିବ୍ରହ୍ମାଣ୍ଡସୁନ୍ଦରୀ)

ନିତମ୍ବେ କ୍ଷୀନ ବସନ କୁଚରେ ହାର ମଣ୍ଡନ
ତନୁ ଲେପ କଲେ ଶ୍ରୀଖଣ୍ଡରେ
ଅଗୁରୁ ଧୂପ ସୁବାସ ସୁଲଳିତ କେଶ ପାଶ
ଲକ୍ଷାରସ ରଞ୍ଜିଲେ ପାଦରେ ସେ,
ନାୟି ଗଣେ,
ହଂସକ ରଞ୍ଜିଲେ ତହିଁ ପରେ,
ହଂସ ରୁଚି ସମ ନାଦ ଶୁଣନ୍ତେ ଶ୍ରୁତି ଆନନ୍ଦ
ହେଲେ ଯୁବାଜନ ଜ୍ଞାନ ହରେ ସେ ।
(ଅନଙ୍ଗ ରେଖା)

କଣ୍ଠେ ତାଟଙ୍କ ଝଲକା ମଲ୍ଲୀକଢ଼ୀ ଫୁଲ
ବାଳୀକ ବାଳୀଗୁଣା ଯେ ଦେଲେ ବହୁମୁଲ୍ୟ ।
ନାସାରେ ଖଞ୍ଜିଲେ ଦଣ୍ଡି ନଥ ହୀରା ଗୁଣା
ଗୁଣ୍ଠିଲ ମାହେ ତପୀଙ୍କ ନାଶୁଛି ଧୀଷଣା ।
× × ×

ପାହୁଡ଼ ନୂପୁର ବଳା ଝୁଣ୍ଟିଆ ଆବଳୀ
ଦେଖି ପଦେ ପରିହାସ କଲ୍ଲ କେଉଁ ବାଳୀ ।

(କନକଲତା)

କଣ୍ଠେ ବିଅନ୍ତେ ମୋତି ଗୃପସରି ।
ରହିଲେ ଉପମାଏ ଅପସରି ॥
କି କମ୍ବୁ ଜିଣିଲ୍ଲ ଯଶ ପ୍ରକାଶ ।
ମତ୍ତ କପୋତ କି କରୁଛି ହାସ ସେ ॥
ମୋତିମାଳୀ କାଚମାଳୀ ଯେ,
ଆଜ ମାଳୀ ଆଳ କେତେକ କହିବା ଯେତେକ ମଣ୍ଡିଲେ ଆଳୀ ଯେ ॥

× × ×

ବାଉଟି-ସାର ଘିବ ଦେଲେ ତହିଁ । ଙ୍କାମ ତାଡନକ ତାଡ଼କ ବହି ॥
ଅଙ୍ଗୁଳି ଠାରେ ମଣିବନ୍ଧ ପଛେ । ଅଙ୍ଗୁଳି ମଣ୍ଡିଲେ ଅଙ୍ଗୁରୀ ସ୍ୱଚ୍ଛେ ସେ ॥
ଦେଲେ ମରକତ ଚୂଡ଼ି ଯେ,
ସଖୀମାନେ ଦାମ ଭ୍ରମରେ ଭ୍ରମରେ ଭ୍ରମରେ କି ଅବା ଜଡ଼ି ଯେ ॥

(ଲାବଣ୍ୟବତୀ)

ନାୟିକାର ନବ-ଯୌବନ ଉଦୟ ହେବାମାତ୍ରେ ତା'ର ମନରେ କାମ ବିକାର ଜାତ ହୁଏ । ସେତେବେଳେ ସେ ସଖୀମାନଙ୍କ ଗହଣରେ ରହି କାଳ କାଟିବାକୁ ଇଚ୍ଛାକରେ ଏବଂ କେବେକେବେ ସହଚରୀ ପରିବେଷ୍ଟିତା ହୋଇ ପ୍ରମୋଦ ଉଦ୍ୟାନ ଭ୍ରମଣରେ ବିଚରଣ କରି କାଳ ବିତାଇବାକୁ ଚେଷ୍ଟା କରେ । କାଲ୍ଯନିକ କାବ୍ୟର କବିମାନେ ପ୍ରମୋଦ କାନନର ଦୃଶ୍ୟାବଳୀ, ପତ୍ର, ପୁଷ୍ପ, ଫଳ, ବୃକ୍ଷ, ଶାଖା ଆଦି ପ୍ରାକୃତିକ ଦୃଶ୍ୟାବଳୀ ଠାରେ ବ୍ୟକ୍ତିତ୍ୱାରୋପ କରି ବର୍ଣ୍ଣନୀୟ ବିଷୟକୁ ଆହୁରି ରମଣୀୟ କରିବାରେ ପଶ୍ଚାତ୍‌ପଦ ହୋଇ ନାହାନ୍ତି ।

ନାୟକ ନାୟିକାଙ୍କ ମନରେ ପରସ୍ପର ପ୍ରତି ଅନୁରାଗ ଜାତ ହେବା ମୂଳରେ ଭିନ୍ନ ଭିନ୍ନ କାବ୍ୟରେ ବିଭିନ୍ନ ପ୍ରକାର ଉପାଦାନର ଅବତାରଣା କରାଯାଇଛି ।

କେତେକ କାବ୍ୟରେ ବୈତାଳିକ, ନାୟିକା ଆଗରେ ନାୟକର ଗୁଣ ବର୍ଣ୍ଣନା କରୁଥିବା ବେଳେ, ଅନ୍ୟ କେତେକ କାବ୍ୟରେ ଶୁକ ହଂସ ପିକ ଆଦି ପକ୍ଷୀମାନଙ୍କ ଦ୍ୱାରା ନାୟକ ନାୟିକାଙ୍କ ସମ୍ମୁଖରେ ପରସ୍ପରର ଗୁଣ ବର୍ଣ୍ଣନା କରାଯାଇଛି ।

ଗୁଣ ବର୍ଣ୍ଣନାରେ ପରସ୍ପର ପ୍ରତି ଆକୃଷ୍ଟ ହେବା ପରେ ମିଳନର ପ୍ରାରମ୍ଭିକ ସୂତ୍ର ସ୍ୱରୂପ ପତ୍ର ପ୍ରେରଣକୁ କବିମାନେ ମାଧ୍ୟମ ରୂପେ ଗ୍ରହଣ କରିଛନ୍ତି । ସେହି ମାର୍ଗର ଅନୁସରଣ କରି ନାୟକ ନାୟିକାଙ୍କ ହୃଦୟରେ କବିମାନେ ପ୍ରଣୟର ଅଙ୍କୁରା-ରୋପଣ କରିବାରେ ସମର୍ଥ ହୋଇଛନ୍ତି । ଅନ୍ୟ କେତେକ କବି ସ୍ୱପ୍ନ ଦର୍ଶନର ଅବତାରଣା କରି ନାୟିକା ପ୍ରାଣରେ ନାୟକ ପ୍ରତି ଅନୁରାଗ ଜାତ କରାଇବାରେ ସଫଳ ହୋଇଛନ୍ତି । ଏ ପ୍ରକାର ଚିନ୍ତାଧାରା ଖୁବ୍ ସମ୍ଭବତଃ ସଂସ୍କୃତ କାବ୍ୟରୁ ଗ୍ରହଣ କରାଯାଇଛି । ଓଡ଼ିଆ କାବ୍ୟରେ ସ୍ୱପ୍ନ ଦର୍ଶନରେ ନାୟକ ପ୍ରତି ଅନୁରାଗ ଜାତ ହେବା ପ୍ରସଙ୍ଗ ବୋଧହୁଏ ସର୍ବପ୍ରଥମେ କବି ଶଙ୍କର ଦାସ ସ୍ୱ ପ୍ରଣୀତ 'ଊଷାଭିଳାଷ' କାବ୍ୟରେ ପ୍ରୟୋଗ କରିଥିଲେ । 'ଊଷାଭିଳାଷ'ର ପଞ୍ଚମ ଛାନ୍ଦରେ ଊଷା ଦ୍ୱାରକାର କାମ ନନ୍ଦନ କାନ୍ତ ଅନିରୁଦ୍ଧଙ୍କୁ ସ୍ୱପ୍ନରେ ଦେଖି ଶଯ୍ୟା ତ୍ୟାଗ କରି ବିକଳ ଭାବରେ କାନ୍ଦି ଉଠିଛି—

"ପଲଙ୍କ ତେଜିଣ ଉଠିଲି ସୁମୁଖୀ ସପନ ସଙ୍କେତ ପାଇଣ,
ଆହା ପ୍ରାଣନାଥ କେଣେ ଗଲୁ ବୋଲି ଉଚ୍ଚ ସ୍ୱରେ କରେ କାରୁଣ୍ୟ ।
ଦଇବ, ଦେଖାଇ ନିଧି ହରି ନେଲୁ ।
ଶିଶୁ କୁମାରୀ ମୁଁ କିଛି ନ ଜାଣଇ କମ୍ପାଇ ମୋତେ ଏହା କଲୁ ।"

(ଶିଶୁଶଙ୍କର ଦାସଙ୍କ ଊଷାଭିଳାଷ)

ଏହି ଭାବଧାରାର ଅନୁକରଣରେ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ତାଙ୍କ 'ଲାବଣ୍ୟବତୀ' କାବ୍ୟରେ ସ୍ୱପ୍ନ ଦର୍ଶନର ଆଲେଖ୍ୟ ଚିତ୍ରଣ କରାଇ ନାୟିକା ଲାବଣ୍ୟ-ବତୀକୁ ଅଶ୍ରୁମୁଖୀ କରାଇଛନ୍ତି —

"ଚେତି ଚତୁରୀ ଚିହ୍ନିଲା ନଶିନାଶେ ପାଶେ ନାହିଁ ହବ୍ୟତରୁଣ ।
ମାରି ହୃଦେ ହାତ ନାଥ ନାଥ ବୋଲି ଅତିଉଚେ କଲା କାରୁଣ୍ୟ ।
ଖୋଜେ ଅଧୀରେ,

ଚେତନା ହତ ସେ କ୍ଷଣରେ,
ଶେଯ ଲେଉଟାଇ କବରୀ ଫିଟାଇ କର ଭରି କୁଚ ସନ୍ଧିରେ ।
ପୁଣି ବୋଲଇ ହେ ଜାଣି ମୁଁ ନ ଥିଲି ଦଇବ ତୁ ଏଡ଼େ ଦାରୁଣ ।
କ୍ଷୁଧାତୁରକୁ ସୁଧାତୁର ଭୋଜନ ପରଷିଲୁ କେଉଁ କାରଣ ?
ଭୁଞ୍ଜି ବସିବା,
ବେଳେ କୁଳିଶ ବୃଷ୍ଟି କଲୁ ।
ଯେବେ କଲୁ ତେବେ ପରାଣ ନ ନେଲୁ ଏଡ଼େ ବ୍ୟାକୁଳ କମ୍ପା ଦେଲୁ''!

(ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀ)

ଏହାର ଅନୁକରଣରେ କବିସମ୍ରାଟ୍ ଭଞ୍ଜଙ୍କ ପିତୃବ୍ୟ ଘନ ଭଞ୍ଜ ସ୍ୱ ପ୍ରଣୀତ 'ରସନିଧି' କାବ୍ୟରେ ନାୟିକା ରସନିଧିକୁ ସ୍ୱପ୍ନ ଦର୍ଶନ କରାଇ ଲେଖିଛନ୍ତି —

"ହେଲା ନିଦ୍ରା ଯହୁଁ ଅନ୍ତରହିତ
ଚାହିଁଲା ପାଶରେ କେହି ନାହିଁ ତ ।
ଭାବଇ ମନେ ଆଜ ଅବହିତ
ମୋ ମନ ମୋହିତ,
କରାଇ ତାହାଙ୍କୁ ନେଲା କାହିଁ ତ !
ଦିବ୍ୟ ପୁରୁଷ ଦେଖିଣ ସ୍ୱପନ
କାମଜିତ ରୂପ ତେଜ ତପନ ।
ପଲଙ୍କେ ବସିଲା ହୋଇ ପ୍ରସନ୍ନ
ଗୃଠୁ ଆଲପନ,
କରି ଛଦନ୍ତେ ଚୁମ୍ବିଲା ଲପନ" ।।

(ଘନଭଞ୍ଜଙ୍କ ରସନିଧି ଷଷ୍ଠ-ଛାନ୍ଦ)

ସ୍ୱପ୍ନଦର୍ଶନ ପରି, ଐନ୍ଦ୍ରଜାଲିକର ଅବତାରଣା କରି କେତେକ କବି ସ୍ୱ ସ୍ୱ କାବ୍ୟ ନାୟିକାର ପ୍ରାଣରେ ନାୟକ ପ୍ରତି ଅନୁରାଗର ବୀଜ ବପନ କରାଇଛନ୍ତି । ଓଡ଼ିଆ କାବ୍ୟରେ 'ଐନ୍ଦ୍ରଜାଲିକ' ପ୍ରସଙ୍ଗ ଖୁବ୍ ସମ୍ଭବତଃ ବାଣପୁର ନରେଶ ରଘୁନାଥ

ହରିଚନ୍ଦନଙ୍କ ନାମରେ ଭଣିତ 'ଲୀଳାବତୀ' କାବ୍ୟରେ ପ୍ରଥମେ ବର୍ଣ୍ଣିତ ହୋଇଛି । ଉକ୍ତ ପ୍ରସଙ୍ଗଟି ଶୃଙ୍ଗାର ରସର ପରିପୋଷକ ରୂପେ ଜନସମାଜରେ ଆଦୃତ ହୋଇଥିବାରୁ; ପରବର୍ତ୍ତୀ କବି ଉପେନ୍ଦ୍ର ଭଞ୍ଜ ଓ କବି କଳାନାଥ ମହାପାତ୍ର ଙ୍କ ସ୍ୱରଚିତ 'ଲାବଣ୍ୟବତୀ' ଓ 'ଲାବଣ୍ୟନିଧି' କାବ୍ୟରେ ମଧ୍ୟ ଐନ୍ଦ୍ରଜାଲିକର ସମାବେଶ କରାଇ, କାବ୍ୟ ନାୟିକା ମନରେ ନାୟକ ପ୍ରତି ଐକାନ୍ତିକ ଭାବ ଜାଗ୍ରତ କରାଇଲେ । ଉଦାହରଣ ସ୍ୱରୂପ 'ଲୀଳାବତୀ' 'ଲାବଣ୍ୟବତୀ' ଓ 'ଲାବଣ୍ୟନିଧି' କାବ୍ୟର ଐନ୍ଦ୍ରଜାଲିକ ପ୍ରସଙ୍ଗରୁ କିୟଦଂଶ ଏଠାରେ ପ୍ରଦତ୍ତ ହେଲା —

"ନଟ ମୁଖ ଚାହିଁ ନଟୀ ଇଷିତେ ହସିଲା
ଆର କଷାନ୍ତରକୁ ସେ ଚରିତ ରଞ୍ଜିଲା ।
ଲୋମପାଦ ଋଷ୍ୟଶୃଙ୍ଗ ଚରୁ ଦଶରଥ
ଯଜ୍ଞ ପୁରୁଷ ବାହାର ଚରୁସ୍ଥାଳୀ ହସ୍ତ ।
ସାତଶ ତେପନ ରାଣୀ ଆଣି ଉଭା କଲା
ଦଶରଥ ହାତରେ ପାୟେସ ନେଇ ଦେଲା ।
ରଘୁନାଥ ଭରତ ଲକ୍ଷ୍ମଣ ଶତ୍ରୁଘନ
ଚାରି କୁମାର ଜନମ ବାଳଲୀଳା ମାନ ।
ବିଶ୍ୱାମିତ୍ର ଯଜ୍ଞରକ୍ଷା ତାଡ଼କା ମାରଣ
ବାହୁ ସୁବାହୁ କ୍ଷେପଣ ଅହଲ୍ୟା ତାରଣ ।
ଧନୁଭଗ୍ନ ସୀତାବିଭା ବିନୟାଇ ବିଭା
ବନାଣିକା ବାଟେ ପରଶୁରାମର ପ୍ରତିଭା ।
ଯୁବରାଜ ସମୟେ ବନକୁ ଯିବା ଦେଖି
ସଭାଯାକ ଶୋକେ ଲୁହେ ପୂରାଇଲେ ଆଖି ।

× × ×

ମହାଯୁଦ୍ଧ ସଙ୍କୁଳ ସୁବଳ ତଳେ ରନ୍ଧ୍ର
ନାଗଫାଶ ବନ୍ଧ ଇନ୍ଦ୍ରଜିତ ଛେଦ କନ୍ଧ ।
ଲକ୍ଷ୍ମଣ ଶକତି ଶରେ ପଡ଼ିବା ଦେଖିଲେ
ହାହାକାର ହୋଇ ସଭା ରୋଦନେ ବୁଡ଼ିଲେ ।

ଲଲାଟେ କର ମାରିଲେ ମୂର୍ଚ୍ଛାକେ ପଡ଼ିଲେ
ହନୁମାନ ମହାମେରୁ ଆଣିମା ଦେଖିଲେ ।
ରାବଣ ନାଶନ ରାମ ରାଜ୍ୟେ ଅଭିଷେକ
ଦେଖି ସମସ୍ତେ ଲଭିଲେ ଆନନ୍ଦ ଅନେକ" ।
(ଲୀଳାବତୀ)

× × ×

ଏଣୁ କାଳେ ଜାଳିକ ବୋଇଲା ନେଇ ବୁଜ
ନେଇ ବୁଜନ୍ତେ ରଚିଲା ସେ ମାୟା ସମାଜ ।
ଗୃହୁଁ ଲୋମୋଦ୍‌ଗମ ଜନେ ଲୋମପାଦ ବୋଲେ
ଜରତା ରତାରେ ଋଷ୍ୟଶୃଙ୍ଗ ଆସି ହେଲେ ।

× × ×

ଅଭିରାମ ଶ୍ରୀରାମ ଶୁଭରତ ଭରତ
ସଲକ୍ଷଣ ଲକ୍ଷ୍ମଣ ଶତ୍ରୁଘ୍ନ ହେଲେ ଜାତ ।

× × ×

ସୁବାହୁ ସୁବାହୁ ତଳେ ମାରି ମାରୀଚକୁ
ଆକାଶରେ ଶରେ ଉଡ଼ାଇଲେ ସେ ଯଶକୁ ।
ପଥରେ ପଥରେ ନାରୀ କରି କଲେ ମୋଦ
ଦାସବତ୍ସଳ ଦାସରେ ଧୁଆଇଲେ ପାଦ ।

× × ×

ଖରାୟୁଧେ ବରାୟୁଧ ବଧ ବିଚାରିଲେ ।
ଅମଳାନ ଅସ୍ତ୍ର ବ୍ରହ୍ମଶରକୁ ପାଇଲେ

× × ×

ହେମ ସାରଙ୍ଗ ରଙ୍ଗରେ ଲଙ୍କା ଦଣ୍ଡଧାରୀ
ସୀତା ଶୀତାଂଶୁ ମୁଖୀକି ଉଟଜରୁ ହରି ।
× × ×

( ଉଦ୍ଧରଣ )

ମିତ୍ରବଂଶୀ ମିତ୍ରବସି ମିତ୍ର ପୁତ୍ର ସଙ୍ଗେ
ଭେଦ ଶାଳ ଦୁନ୍ଦୁଭି ଅସ୍ଥିକ ଗୃଳେ ରଙ୍ଗେ ।

× × ×

ଅଧିଷଣ ବଧିଷଣେ ଅଭିଷେକ କରି
ବଙ୍କଦେହୀ ଦଗ୍ଧ ଅନଳରେ ହେମ ପରି ।
ପୁଷ୍ପକରେ ପୁଷ୍କରେ ସବଳେ କଲେ ଗତି
ଯୋଦ୍ଧାବର ଅଯୋଧ୍ୟାରେ ହୋଇଲେ ନୃପତି ଯେ ।
ଦେଖାଉଁ ଦେଖାଉଁ ରାମାୟଣ ମହୋତ୍ସବ
ଚନ୍ଦ୍ରବଦନାଙ୍କ ଦେଖାଇଲି ଅନ୍ୟଭାବ ଯେ ।
କର୍ଣ୍ଣାଟ ରାଜନନ୍ଦନ ରାମ ଆଗେ ଉଭା
ବିଶ୍ୱମ୍ଭର ଆଗେ ବିଶ୍ୱକେତୁ ଯଥା ଶୋଭା ଯେ ।
କୁମାରୀଙ୍କ ଶୁଭୁଛି ଏମନ୍ତ ଜଣାଉଛି
ଆନ ବରେ ମୋର ପ୍ରୟୋଜନ ନାହିଁ କହୁ ଯେ ।

× × ×

କରୁଣାଲୋଚନେ ରାମ ଅମ୍ବୁବାଣୀ ଭଷି
ଦେଖି ଶୁଣି ଏମନ୍ତ ସେ କମ୍ବୁଗ୍ରୀ ସୁବାସୀ ଯେ ।"

(ଲାବଣ୍ୟବତୀ)

× × ×

ଶୁଣି ନଟ ଆରମ୍ଭିଲା ମାୟାକୁ ସତ୍ତ୍ୱରେ
ସଭାଲୋକୁଁ ଦର୍ଶିଲା ସେ ଏମନ୍ତ ପ୍ରକାରେ ।

× × ×

ସଦା ରାମ ସଦା ରାମାନୁଜ ରୂପ ଧରି
ସଲକ୍ଷଣ ସଲକ୍ଷ୍ମଣ ହୋଇ ଅବତରି ଯେ ।
କୁଶଳରେ କୋଶଳରେ ଦଶରଥ ଘରେ
ଜନକକୁ ଜନକ କୁଟୀରେ ଶ୍ରାପ୍ୟା କରେ ।

ଦିନ-କର ଦିନକର କୁଳ ଶିରୋମଣି
ତାପସଙ୍କ ତାପ-ସଙ୍କଟକୁ ମନେ ଗୁଣି ।
ମାୟାବୀ ସେ ମାୟା ବିଶେଷେ ଯା ଆରମ୍ଭିଲେ
ବିଶ୍ୱମିତ୍ର ବିଶ୍ୱାମିତ୍ରଙ୍କ ନାଶକୁ କଲେ ଯେ ।
ସେ ସଙ୍ଗରେ ସେ ସଙ୍ଗରେ ଜଣିମାର ଦୀକ୍ଷା
ଅସ୍ତ୍ର-ରଙ୍କ ଅସ୍ତ୍ରରଙ୍କ ମନ୍ତ୍ର କଲେ ଶିକ୍ଷା ଯେ ।
ତାଡ଼କାକୁ ତା ଡକାକୁ ଶୁଣି ନାଶ କଲେ
ଜାଗରୂତେ ଯାଗର ତେଜକୁ ପ୍ରକାଶିଲେ ଯେ ।
ସୁବାହୁର ସୁବାହୁର ବନେ ପ୍ରାଣ ନେଲେ
ସେ ପଥ ରସେ ପଥର ନାରୀ ତାରିଗଲେ ଯେ ।

× × ×

ଏତେ ଭଲ ମାୟାରେ ସେ କୁମରକୁ ଆଣି
ଉଭା କରିବାରେ ସେ ଜଣାଏ ଏହି ବାଣୀ ।
ଆହେ ପ୍ରଭୁ ଦୀନଜନ ଗତି ରଘୁପତି
ଗଉତମେ ଦଉ କଲ ଉତ୍ତମ ଯୁବତୀ ।
ତାରାଧୀପ-ମୁଖୀ ତାର ସୁଗ୍ରୀବକୁ ଦେଲ
ବିଭୀଷଣେ ମନ୍ଦୋଦରୀ ସମର୍ପଣ କଲ ଯେ ।
ମୋତେ ଏବେ ମାହାପ୍ରଭୁ ହୁଅ ପରସନ
ଦିଆଅ ଲବଣ୍ୟନିଧି ମୁଖ ଦରଶନ ହେ ।
କୁମର ଜଣାଇମାର ଶୁଣିଛୁ ସୁକେଶୀ
ଏହି ସମୟରେ ରାମ ଅସ୍ତୁ ବାଣୀ ଭାଷି ଯେ ।

(ଲବଣ୍ୟନିଧି)

ନାୟକ ନାୟିକାମାନଙ୍କ ମନରେ ପରସ୍ପର ପ୍ରତି ଅନୁରାଗ ଜାତ ହେବା ପରେ ମିଳନ ପୂର୍ବରୁ ଅଳଙ୍କାର ଶାସ୍ତ୍ର ସମ୍ମତ କାମଦଶାର ବିକାର ଉଭୟଙ୍କ ଠାରେ ପରିଲକ୍ଷିତ ହୁଏ । ସଂସ୍କୃତ କବିମାନେ ନାୟକ ଓ ନାୟିକା ଉଭୟଙ୍କ ଠାରେ

"ଅଭିଳାଷ, ଚିନ୍ତା, ସ୍ମୃତି, ଗୁଣ କଥନ, ଉଦ୍ବେଗ, ପ୍ରଳାପ, ଉନ୍ମାଦ, ବ୍ୟାଧି ଓ ଜଡ଼ତା" ପ୍ରଭୃତି ଦଶଟି କାମଦଶାର ବର୍ଣ୍ଣନା କରୁଥିବା ବେଳେ ଓଡ଼ିଆ କବିମାନେ ସ୍ୱ ସ୍ୱ କାବ୍ୟରେ ବିଶେଷତଃ ନାୟିକା ଠାରେ କାମଦଶାର ବର୍ଣ୍ଣନା କରି କ୍ଷାନ୍ତ ହୋଇଛନ୍ତି। ସେହି ପ୍ରସଙ୍ଗରେ ମଳୟାନିଳ, ଚନ୍ଦ୍ର, ଚନ୍ଦନ, କୋକିଳ ଆଦି ବିରହୀ ବିରହିଣୀଙ୍କୁ ଅଶେଷ ତାପ ଦେଇଥିବାର ଅବତାରଣା କାବ୍ୟରେ ହୋଇଥାଏ। କବିମାନେ ଆଦିରସାତ୍ମକ କାବ୍ୟରେ ଆଲମ୍ବନ ଓ ଉଦ୍ଦୀପନ ବିଭାବର ପରିବେଷଣ ନିମିତ୍ତ ସେହି ସମସ୍ତ ବର୍ଣ୍ଣନାକୁ ଆଗ୍ରହର ସହିତ କାବ୍ୟରେ ପରିବେଶଣ କରିଥାଆନ୍ତି। ଏ ସମସ୍ତ ବର୍ଣ୍ଣନା ପରମ୍ପରା କ୍ରମେ ସଂସ୍କୃତ କାବ୍ୟଜଗତରୁ ଓଡ଼ିଆ କାବ୍ୟକୁ ଆସିଛି। ସ୍ଥଳ-ବିଶେଷରେ ଓଡ଼ିଆ କାବ୍ୟର ବର୍ଣ୍ଣନା ସଂସ୍କୃତର ଗ୍ରାବଧାରାକୁ ଅତିକ୍ରମ କରି ସୁରସିକ ପାଠକ ପ୍ରାଣରେ ଅଭିନବ ପୁଳକ ସୃଷ୍ଟି କରିଛି।

ତା'ପରେ କାଳ୍ପନିକ କାବ୍ୟ ଗୁଡ଼ିକରେ ନାୟକ ନାୟିକାଙ୍କ ମଧ୍ୟରେ ବିବାହର ପୂର୍ବାଭାସ ସ୍ୱରୂପ ଅନେକ ଉପାୟ ଅବଲମ୍ବନ କରାଯାଇଛି। କେତେକ କ୍ଷେତ୍ରରେ ସ୍ୱୟମ୍ବରର ବର୍ଣ୍ଣନା ଥିଲେମଧ୍ୟ ଅନ୍ୟ କେତେକ କାବ୍ୟରେ ଗାନ୍ଧର୍ବ ବିବାହର ବର୍ଣ୍ଣନା କରାଯାଇଛି ଏବଂ ଅନ୍ୟ କେତେକ କାବ୍ୟରେ ନାୟକର ଅଦ୍ଭୁତ କାର୍ଯ୍ୟରେ ମୁଗ୍ଧ ହୋଇ ରାଜା ସ୍ୱ କନ୍ୟା (ନାୟିକା)କୁ ତା'ର ହସ୍ତରେ ଅର୍ପଣ କରିଛନ୍ତି।

ବିବାହ ପରେ ସଖୀମାନଙ୍କ ଦ୍ୱାରା ବେଶଭୂଷାରେ ଅଳଂକୃତା ହୋଇ ନାୟିକା ମଧୁ ଯାମିନୀର ଉପଭୋଗ ନିମିତ୍ତ ଗମନ ତଥା ସେହି ସମୟରେ ସଖୀମାନଙ୍କ ପରିହାସ ଆଦି ବର୍ଣ୍ଣନା ପ୍ରାୟ ପ୍ରତ୍ୟେକ କାବ୍ୟରେ ଦେଖାଯାଏ। ଓଡ଼ିଆ କାଳ୍ପନିକ କାବ୍ୟର ପ୍ରାରମ୍ଭିକ ଯୁଗରେ ଏ'ପ୍ରକାର ବର୍ଣ୍ଣନା ଅତି ସଂକ୍ଷେପରେ କରାଯାଇଥିଲେ ହେଁ, ପରବର୍ତ୍ତୀ କାଳ ଅର୍ଥାତ୍ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀରେ ଉକ୍ତ ପ୍ରସଙ୍ଗ ଗୋଟିଏ ଦୁଇଟି ଛାନ୍ଦରେ ବର୍ଣ୍ଣନା କରାଯାଇଛି।

ତତ୍ପରେ ଷଡ଼୍ ଋତୁ ବିହାର, ଉଦ୍ୟାନ ବିହାର, ଜଳକେଳୀ ତଥା ଅନ୍ୟାନ୍ୟ ପ୍ରକାର ରତିକେଳୀର ବର୍ଣ୍ଣନା ଓଡ଼ିଆ କାଳ୍ପନିକ କାବ୍ୟରେ କବିମାନେ ସନ୍ନିବେଶିତ କରିଥାଆନ୍ତି। ଏହି ଅପୂର୍ବ ମିଳନ ସମୟରେ କେତେକ କାବ୍ୟରେ ବିପ୍ରଲମ୍ଭର ବର୍ଣ୍ଣନା କରାଯାଇଛି। କାରଣ, ପୂର୍ବାଚାର୍ଯ୍ୟମାନଙ୍କ ମତରେ—

"ନ ବିନା ବିପ୍ରଲମ୍ଭେନ
ଶୃଙ୍ଗାରଃ ପୁଷ୍ଟି ମଶ୍ନୁତେ" ବୋଲି
ବର୍ଣ୍ଣିନା ରହିଛି । ତେଣୁ ଅନେକ କବି ନିଜ କାବ୍ୟକୁ ରସାଣିତ କରିବା ଇଚ୍ଛାରେ ବିପ୍ରଲମ୍ଭର ବର୍ଣ୍ଣିନା କରିଛନ୍ତି । ଅବଶ୍ୟ ଅନ୍ୟ କେତେକ କାବ୍ୟରେ ସେ ଧରଣର ବର୍ଣ୍ଣିନା ପରିଲକ୍ଷିତହୁଏ ନାହିଁ ।

ଯେଉଁ କାବ୍ୟ ଗୁଡ଼ିକରେ 'ବିପ୍ରଲମ୍ଭ'ର ବର୍ଣ୍ଣିନା କରାଯାଇଥାଏ, ସେଥିରେ ନାୟକ କୌଣସି ଦୁରୁହ ସାହସିକ କାର୍ଯ୍ୟ ଶେଷ କରି ନାୟିକା ସହିତ ସମ୍ମିଳିତ ହୋଇଥାଏ ଏବଂ ଅନ୍ୟ କେତେକ କାବ୍ୟରେ ନାୟକ ନିଶ୍ଚିତ ମୃତ୍ୟୁ ମୁଖରୁ ବା ଅଭିଶାପ ଜନିତ ବିଚ୍ଛେଦ ଦଶାରୁ ମୁକ୍ତ ହୋଇ ନାୟିକା ନିକଟରେ ଉପସ୍ଥିତ ହୋଇଥାଏ ।

ଯେଉଁ କାବ୍ୟମାନଙ୍କରେ ବିପ୍ରଲମ୍ଭର ବର୍ଣ୍ଣିନା ପରିଲକ୍ଷିତ ହୁଏନାହିଁ; ସେସ-ଗୁଡ଼ିକରେ ନାୟକ ଓ ନାୟିକାଙ୍କର ପାରମ୍ପରିକ ବିବାହ ପରେ, କେବଳ କେଳୀ ବର୍ଣ୍ଣିନା କରାଯାଇ କାବ୍ୟର କଥାବସ୍ତୁ ଶେଷ କରାଯାଇ ଥିବାର ଦେଖାଯାଏ ।

ଓଡ଼ିଆ କାଳ୍ପନିକ କାବ୍ୟଗୁଡ଼ିକର ବର୍ଣ୍ଣିନା ଶୈଳୀରେ ଆଦୌ ତାରତମ୍ୟ ପରିଲକ୍ଷିତ ହେଉ ନ ଥିଲେହେଁ, କାବ୍ୟିକ ଭାଷା ଯୋଜନାରେ କବିମାନଙ୍କ ମଧ୍ୟରେ ବିଶେଷ ବ୍ୟବଧାନ ଥିବାର ଦେଖାଯାଏ । ଖ୍ରୀଷ୍ଟୀୟ ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀର କବିମାନେ ଅପେକ୍ଷାକୃତ ସରଳ, ସାବଲୀଳ, ସର୍ବଜନ ବୋଧ ତଥା ଏକାର୍ଥବାଚୀ ଶବ୍ଦର ପ୍ରୟୋଗ କରିଥିଲେ ହେ, ଖ୍ରୀଷ୍ଟୀୟ ସପ୍ତଦଶ ଓ ଅଷ୍ଟାଦଶ ଶତକର କବିମାନେ ପୂର୍ବ ଗୁରୁମାନଙ୍କ ପନ୍ଥା ଅନୁସରଣ ନ କରି ସମାସବହୁଳ,ଦୁର୍ବୋଧ୍ୟ,ଦ୍ୟର୍ଥବୋଧକ କ୍ଲିଷ୍ଟ ପଦାବଳୀର ସମାବେଶରେ ନିଜର ପାଣ୍ଡିତ୍ୟ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ କାବ୍ୟ ଗୁଡ଼ିକୁ ଗଣ ସାହିତ୍ୟ ରୂପେ ପ୍ରଚଳନ କରିବା ପରିବର୍ତ୍ତେ, କେବଳ ରାଜଦରବାରର ଆଦରଣୀୟ କାବ୍ୟ ରୂପେ ଉପସ୍ଥାପିତ କରିଛନ୍ତି । ଏ ଧରଣର ପ୍ରୟାସ ମୂଳରେ, କବିମାନଙ୍କ ମନରେ ପ୍ରତିଦ୍ୱନ୍ଦ୍ୱିତାମୂଳକ ଭାବନା ପରୋକ୍ଷ ଭାବରେ ସେମାନଙ୍କୁ ଉତ୍ସାହିତ କରିଥିଲି । ରାଜଦରବାରରେ ଜନୈକ କବିଙ୍କ ରଚିତ କାବ୍ୟଠାରୁ ନିଜ କାବ୍ୟର ମହତ୍ତ୍ୱ ତଥା ପ୍ରାଧାନ୍ୟ ଦର୍ଶାଇବା ଉଦ୍ଦେଶ୍ୟରେହିଁ କବିମାନେ ସ୍ୱ ସ୍ୱ କାବ୍ୟଗୁଡ଼ିକୁ ଅପେକ୍ଷାକୃତ ଦୁର୍ବୋଧ୍ୟ କରାଇବା ଉଦ୍ଦେଶ୍ୟରେ, ତାତ୍‌କାଳୀନ ସମାଜରେ ସର୍ବ-ସାଧାରଣଙ୍କ ଦ୍ୱାରା ପ୍ରଚଳିତ ଶବ୍ଦ ପରିବର୍ତ୍ତେ, କ୍ଲିଷ୍ଟପଦାବଳୀର ପ୍ରୟୋଗରେ ମନ

ବଳାଇଲେ ଏବଂ ତଥା କଥିତ ଉଚ୍ଚାଙ୍ଗ କାବ୍ୟ ପରିବେଷଣରେ ଔ[illegible]କ୍ୟ ପ୍ରକାଶ କରି, ଅତିମାତ୍ରାରେ ଯମକ, ଅନୁପ୍ରାସ, ଶ୍ଳେଷ, ବିରୋଧାଭାସାଦି ଦୁର୍ବୋଧ ଅଳଙ୍କାରରେ ଅଳଂକୃତ କରିବାରେ ଲାଗିଲେ । ତଦ୍ ବ୍ୟତୀତ, ପୂର୍ବବର୍ତ୍ତୀ କବିମାନଙ୍କ ତୁଳନାରେ ଅତିମାତ୍ରାରେ ଆଦିରସର ପରିବେଷଣ କରି ସ୍ୱ ପୃଷ୍ଠପୋଷକମାନଙ୍କ ମନୋରଞ୍ଜନ କରିବାରେ ପ୍ରୟାସୀ ହେଲେ ।

ଏହାର କାରଣ ସମ୍ବନ୍ଧରେ କେବଳ ଏତିକି କୁହାଯାଇ ପାରେ ଯେ, ଅଶୋକଙ୍କ କଳିଙ୍ଗ ବିଜୟ ଠାରୁ ଆରମ୍ଭ କରି ସୂର୍ଯ୍ୟବଂଶର ଗଜପତି ପ୍ରତାପରୁଦ୍ର ଦେବଙ୍କ ପର୍ଯ୍ୟନ୍ତ ଦୀର୍ଘ ଅଠର ଶହ ବର୍ଷକାଳ ଏ ଜାତି ଦୁର୍ଦ୍ଧର୍ଷ ଲୋମହର୍ଷଣକାରୀ ଯୁଦ୍ଧରେ ବ୍ୟାପୃତ ରହିଥିଲା ଏବଂ ଜାତୀୟ ଗୌରବର ସୁରକ୍ଷା ନିମିତ୍ତ ଏ ଦେଶର ରାଜନ୍ୟବୃନ୍ଦ ବହୁ ପ୍ରୟାସ କରି ପଦକ୍ଷେପରେ ଅତିଷ୍ଠ ହୋଇ ପଡ଼ିଥିଲେ । କିନ୍ତୁ ପ୍ରତାପରୁଦ୍ର ଗଜପତିଙ୍କ ପରେ ଏ ଦେଶରୁ ଗୌରବର ସୂର୍ଯ୍ୟ ଅସ୍ତମିତ ହୋଇଯାଆନ୍ତେ, ବୈଦେଶିକ ଶକ୍ତି ଆଗରେ ମୁଣ୍ଡ ନୁଆଁଇ ଏ ଦେଶର ରାଜନ୍ୟମଣ୍ଡଳୀ କୌଣସିମତେ ଆତ୍ମରକ୍ଷାର ଉପାୟ ଖୋଜିବାରେ ଲାଗିଲେ । ସେହି ସୁଯୋଗରେ ସେମାନେ ମୋଗଲ ମରହଟ୍ଟାମାନଙ୍କ ଉପରେ ଦେଶରକ୍ଷାର ଦାୟିତ୍ୱ ଛାଡ଼ିଦେଇ, ନିଜେ ନିଜର କ୍ଷୁଦ୍ର ପରିସର ମଧ୍ୟରେ ସୁଖନିଦ୍ରାରେ ଶୋଇ ଉଦ୍ଦୀପ୍ତ ଭୋଗବିଳାସର କାମନାକୁ ଚରିତାର୍ଥ କରିବାରେ ଲାଗିଲେ ଏବଂ ସାମାନ୍ୟ ବ୍ୟତିକ୍ରମରେ ପଡ଼ୋଶୀ ରାଜ୍ୟ ସହିତ ଶତ୍ରୁତାରେ ଲିପ୍ତ ରହି କାଳଯାପନ କଲେ । ପୃଷ୍ଠପୋଷକ ମାନଙ୍କର ଏପରି ନିଷ୍କ୍ରିୟତା ଓ ବିଳାସପ୍ରିୟତା ଦେଖି ଦରବାରୀ କବିମାନେ ନିଜ ନିଜର ଲେଖନ ଶୈଳୀ ତଥା ଭାବଧାରାର ପରିବର୍ତ୍ତନ କରି ରାଜାମାନଙ୍କୁ ସୁହାଇଲା ପରି, ଅତିମାତ୍ରାରେ ଆଦିରସର ପରିବେଶଣରେ କାବ୍ୟ କବିତାମାନ ପ୍ରଣୟନ କରି ସେମାନଙ୍କୁ ଶୁଣାଇଲେ । ନାୟିକାର ନଖଶିଖ ଯୌବନ ବର୍ଣ୍ଣନା ତଥା ଅତିରଞ୍ଜିତ କେଳିକଳା କୁତୂହଳ ବର୍ଣ୍ଣନାରେ କାବ୍ୟଗ୍ରନ୍ଥକୁ ଅଭିନବ ସଜ୍ଜାରେ ଏପରି ସଜ୍ଜିତ ଭାବରେ କରିଦେଲେ ଯେ, ତାହା ପୃଷ୍ଠପୋଷକଙ୍କ ନିଷ୍କ୍ରିୟ ଜୀବନ ତଥା ସେମାନଙ୍କ ମନରେ ଉଦ୍ଦୀପିତ କାମବହ୍ନିକୁ ଆହୁରି ପ୍ରଖର କରାଇବାରେ ସମର୍ଥ ହେଲା । ସେହି ଯୁଗରେ, ଅର୍ଥାତ୍ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀ ଠାରୁ ଅଷ୍ଟାଦଶ ଶତାବ୍ଦୀ ଶେଷସୁଦ୍ଧା; ଏପରିକି ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ, ଓଡ଼ିଆ କାବ୍ୟ କବିତା ସେହି ଭାବଧାରାରେ ଓତଃପ୍ରୋତ ଭାବରେ ମିଶିଗଲା ।

କାବ୍ୟମାନଙ୍କରେ ଆଦିରସର ବାହୁଲ୍ୟ କେବଳ ଯେ, ଓଡ଼ିଆ ସାହିତ୍ୟରେ ଅଙ୍ଗୀଭୂତ ହୋଇଥିଲା; ତା'ନୁହେ, ପ୍ରତ୍ୟେକ ଭାରତୀୟ ସାହିତ୍ୟର ଦଶା, ସେହି ମଧ୍ୟବର୍ତ୍ତୀ ଯୁଗରେ ପ୍ରାୟ ଏକାଧରଣର ହୋଇଥିଲା ।

ଏହି ରସବିଳାସର ଚମତ୍କାରିତା ଦେଖାଇ 'କଳ୍ପଲତା'ର ପ୍ରଣେତା ଅର୍ଜୁନ ଦାସ ଓ 'ପରିମଳା'ର ରଚୟିତା ନରସିଂହ ସେଣଙ୍କ ପରେ; ବନମାଳୀ ଦାସ୍ 'ଗୁପ୍ତଇଚ୍ଛାବତୀ'[୧] ପ୍ରତାପ ରାୟଙ୍କ ଶଶୀସେଣା;ବିଷ୍ଣୁ ଦାସଙ୍କ ଲୀଳାବତୀ, ପ୍ରେମଲୋଚନା, କଳାବତୀ' ଇଚ୍ଛାବତୀ, ସୁକୁନ୍ତଳା ଛାନ୍ଦ; ଧନଞ୍ଜୟ ଭଞ୍ଜଙ୍କ ଇଚ୍ଛାବତୀ, ଅନଙ୍ଗରେଖା, ମଦନ ମଞ୍ଜରୀ, କୁଞ୍ଜବିହାରୀ; ଭ୍ରମରବରଙ୍କ ପ୍ରେମଶୀଳା,ଲକ୍ଷ୍ମଣ ମହାନ୍ତିଙ୍କ ଉର୍ମିଳା ଛାନ୍ଦ ଆଦି ବହୁ କାଳ୍ପନିକ କାବ୍ୟ ରଚିତ ହୋଇ ଓଡ଼ିଆ ସାହିତ୍ୟର ଗୋଟିଏ ବିଭାଗକୁ ସମୃଦ୍ଧ କରିଥିଲା ।

ସାହିତ୍ୟର ଏହି ଭାବଧାରା ଅବିଚ୍ଛିନ୍ନ ଗତିରେ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ଅର୍ଥାତ୍ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ପର୍ଯ୍ୟନ୍ତ ଅବାରିତ ଗତିରେ ବହି ଚାଲିଥିଲେ ହେଁ କେବଳ ଗୋଟିଏ ସ୍ଥାନରେ ବାଧାପ୍ରାପ୍ତ ହୋଇଥିଲା ।

ଓଡ଼ିଆ କାଳ୍ପନିକ ସାହିତ୍ୟରେ ସାମନ୍ତବାଦର ଏକଚାଟିଆ ଅଧିକାର ରୂପେ ଚାଲି ଆସୁଥିବା ମନୋଭାବର ସର୍ବପ୍ରଥମେ ବିରୋଧ କରିଥିଲେ କବି ରାମଚନ୍ଦ୍ର ପଟ୍ଟନାୟକ । ତାଙ୍କର ସେହି ବିଦ୍ରୋହାତ୍ମକ ମନୋଭାବର ରୂପରେଖ ଆତ୍ମପ୍ରକାଶ କରିଥିଲା 'ହାରାବତୀ' ଓ 'ଅନୁରାଗବତୀ' କାବ୍ୟରେ । ସେ ପର୍ଯ୍ୟନ୍ତ ଚାଲିଆସୁଥିବା କାଳ୍ପନିକ କାବ୍ୟର ନାୟକ ନାୟିକା ରାଜକୁମାର ବା ରାଜା ଓ ରାଜକୁମାରୀଙ୍କ ପରିବର୍ତ୍ତେ, ସେ ନିଜ କାବ୍ୟର ନାୟକ ନାୟିକା ସାଧାରଣ ପରିବାରରୁ ଗ୍ରହଣ କରିଥିଲେ । 'ହାରାବତୀ' କାବ୍ୟର ନାୟିକା ହେଉଛନ୍ତି—ହାରାବତୀ ନାମ୍ନୀ ଗୋଟିଏ ଅପ୍ରାପ୍ତ ବୟସ୍କା ଗୁଡ଼ିଆ ଘରର ଝିଅ (ଗୁଡ଼କାର ବାଳିକା) ଏବଂ ନାୟକ ସେହି ଗ୍ରାମର ଜଣେ ସାଧାରଣ ପରିବାରର ଯୁବକ । ପିଲାଟି ଦିନରୁ ନାୟିକାର ଅନିନ୍ଦ୍ୟ ସୁନ୍ଦର

---

୧ । 'ଗୁପ୍ତଇଚ୍ଛାବତୀ, ଇଚ୍ଛାବତୀ ଓ ଇଚ୍ଛାବତୀ' ଶୀର୍ଷକ ପ୍ରବନ୍ଧ ଦ୍ରଷ୍ଟବ୍ୟ 'ଓଡ଼ିଆ କବି ଓ କାବ୍ୟ' ପୃ ୧୬—୩୧ ।

୨ । ରଘୁନାଥ ହରିଚନ୍ଦନ ଓ ତାଙ୍କର ସମକାଳୀନ ବିଷ୍ଣୁ ଦାସ । ଲେଖକ—ଶ୍ରୀ କେଦାରନାଥ ମହାପାତ୍ର, କୋଣାର୍କ ୧ମ ବର୍ଷ, ୩ୟ ସଂଖ୍ୟା ପୃ ୪୨—୪୬ ଦ୍ରଷ୍ଟବ୍ୟ ।

ରୂପଜାଲରେ ବନ୍ଦୀ ହୋଇ ନାୟକ 'ଯୁବାରତନ' ତାଙ୍କୁ ପାଇବାର ପ୍ରାରମ୍ଭିକ ପ୍ରୟାସ ସ୍ୱରୂପ କଥାବାର୍ତ୍ତା କରିବାର ସୁଯୋଗ ଖୋଜୁଛି ଏବଂ ହଠାତ୍ ଦିନେ ପୋଖରୀ କୂଳରେ ହାରାବତୀଙ୍କୁ ଦେଖି ତା' ସହିତ କଥାବାର୍ତ୍ତା କରିବାକୁ ଆଗ୍ରହ ପ୍ରକାଶ କରିଛି । ନାୟିକା ହାରାବତୀ ଅନ୍ୟାନ୍ୟ ସମବୟସ୍କ କୁମାରୀମାନଙ୍କ ସହିତ ଓଷା ଲାଗି (ଖୁବ୍ ସମ୍ଭବତଃ ଡଅଁପୋଇ ବା ଖୁଦୁରୁକୁଣୀ ଓଷାଲାଗି) କଇଁଫୁଲ ସଂଗ୍ରହ କରିବାକୁ ପୋଖରୀ କୂଳରେ ଉପସ୍ଥିତ ହୋଇଥିଲା । କିନ୍ତୁ ପାଣି ଭିତରକୁ ପଶିବାକୁ ସାହାସ ନ କରି ନିକଟରେ ଛିଡ଼ା ହୋଇଥିବା ଯୁବକକୁ ସଂକୋଚ ପୂର୍ବକ ସ୍ୱଗତୋକ୍ତିର ସହିତ କହିଲା ·

"କୁସୁମକୁ ଦେଖାଇ କହିଲା ବାଳୀ ଏତେ,
ଏ କୁସୁମ ତୋଳି କେହୁ ଆଣିଦେବ ମୋତେ"

(ହାରାବତୀ – ପ୍ରଥମ ଛାନ୍ଦ)

ଯୁବକ ଏହିପରି ଏକ ସୁଯୋଗର ଅପେକ୍ଷାରେ ଥିଲା ଏବଂ ନାୟିକାର କଥା ଅନୁସାରେ ପୋଖରୀରୁ ଫୁଲ ତୋଳି ଆଣିବାର ପ୍ରତିଶ୍ରୁତି ଦେଇ ନିଜର ମନୋଭାବ ନାୟିକା ଆଗରେ ବ୍ୟକ୍ତକଲା । ସେହିଦିନ ଠାରୁ ନାୟକ ଓ ନାୟିକାଙ୍କ ମନରେ ପ୍ରେମର ଅଙ୍କୁରୋଦ୍‌ଗମ ହୋଇଥିଲା । କିନ୍ତୁ ଉଭୟେ ଭିନ୍ନ ଭିନ୍ନ ଜାତିର ଥିବାରୁ ସେ ଦୁହିଁଙ୍କର ବିବାହ ସାମାଜିକ ରୀତିରେ ସମ୍ପନ୍ନ ହେବାରେ ସମ୍ଭାବନା ନ ଥିଲା । ତା'ସତ୍ତ୍ୱେ ଉଭୟଙ୍କ ମିଳନରେ କୌଣସି ବାଧା ଉପୁଜିଲା ନାହିଁ । ଗୁପ୍ତ ପ୍ରଣୟର ଆଶ୍ରୟ ନେଇ ନାୟକ ନାୟିକାଙ୍କର ମିଳନ କରାଇବାରେ କବି ଯଥାସମ୍ଭବ ଚେଷ୍ଟା କରିଛନ୍ତି ।

ରସିକ କବି ରାମଚନ୍ଦ୍ର ପଟ୍ଟନାୟକ ଅଳଙ୍କାର ଅନୁମୋଦିତ ବିପ୍ରଲମ୍ଭର ଅବତାରଣା କରିବାକୁ ଯାଇ ନାୟିକା ହାରାବତୀର ବିବାହ ଅନ୍ୟତ୍ର କରାଇ ମିଳନର ଏକ ପ୍ରତିବନ୍ଧକ ସୃଷ୍ଟି କରିଛନ୍ତି । କିନ୍ତୁ ଉଭୟେ ପୂର୍ବର ଅନୁରାଗକୁ ପାଶୋରି ପାରି ନାହାନ୍ତି ଏବଂ ଦୂତୀ ମାଧ୍ୟମରେ ଉଭୟଙ୍କର ମିଳନର ମାର୍ଗ ପ୍ରଶସ୍ତ ହୋଇଛି ।

ସାମାଜିକ ରୀତିର ପ୍ରତିବନ୍ଧକ ସତ୍ତ୍ୱେ ପରକୀୟା ପ୍ରୀତିର ଉତ୍ସକୁ କବି ନିଜ କାବ୍ୟ ମାଧ୍ୟମରେ ସମାଜରେ ପ୍ରଚ୍ଛର କରିବାକୁ ଆଦୌ ପଶ୍ଚାତ୍‌ପଦ ହୋଇନାହାନ୍ତି । ନାୟିକା ହାରାବତୀ ସ୍ୱାମୀ ଗୃହକୁ ଚାଲିଯାଆନ୍ତେ, ଉଭୟଙ୍କ ମଧ୍ୟରେ ସାମୟିକ ବିଚ୍ଛେଦ ହୋଇଥାଏ । କିନ୍ତୁ ନାୟିକା ନିଜ ପିତାଙ୍କ ଗୃହକୁ ଫେରିଆସନ୍ତେ ଉଭୟଙ୍କ ହୃଦୟର ପ୍ରଣୟ କାଳିକା ପୁଣି ବିକଶିତ ହୋଇଉଠେ ।

କାବ୍ୟରେ ଏ ପ୍ରକାର ଚରିତ୍ରାଙ୍କନର ପରିବେଷଣ କରି କବି ରାମଚନ୍ଦ୍ର ପଟ୍ଟନାୟକ ସମାଜରେ ନିନ୍ଦିତ ହୋଇଥିଲେ ହେଁ, କାବ୍ୟ ରାଜ୍ୟରେ ଏକ ଅଭିନବ ମାର୍ଗ ପ୍ରଦର୍ଶନ କରିଯାଇଛନ୍ତି । ଅବଶ୍ୟ, କବିଙ୍କ ପ୍ରବର୍ତ୍ତିତ ଅଭିନବ ମାର୍ଗକୁ, ପରବର୍ତ୍ତୀ କାଳ୍ପନିକ କାବ୍ୟର କବିମାନେ ଅନୁସରଣ କରିଥିବାର ଦେଖାଯାଏ ନାହିଁ । ତଥାପି, ଓଡ଼ିଆ କାଳ୍ପନିକ କାବ୍ୟ ରାଜ୍ୟରେ କବି ରାମଚନ୍ଦ୍ରଙ୍କର ଏହି ଅଭିନବ ପ୍ରୟାସ ଏକ ଆଲୋକ ସ୍ତମ୍ଭ ରୂପେ ସମାଲୋଚକମାନଙ୍କର ଦୃଷ୍ଟି ଆକର୍ଷଣ କରେ ।

କବି ରାମଚନ୍ଦ୍ର ପଟ୍ଟନାୟକ ଓ ତାଙ୍କ ଭାଇ ବିଷ୍ଣୁ ପଟ୍ଟନାୟକ ଉଭୟେ ମିଶି 'ଅନୁରାଗବତୀ' ନାମକ ଖଣ୍ଡିଏ କାବ୍ୟ ଲେଖିଛନ୍ତି । ଉକ୍ତ କାବ୍ୟରେ ମଧ୍ୟ ରାଜକୁମାର ଓ ରାଜକୁମାରୀକୁ ନାୟକ ନାୟିକା ରୂପେ ବର୍ଣ୍ଣନା କରି ନ ଯାଇ ବଣିକ ଯୁବକ ଚିତ୍ରଧ୍ୱଜ ସହିତ ସାଧାରଣ ପରିବାରର ଅନିନ୍ଦ୍ୟ ସୁନ୍ଦରୀ କନ୍ୟା ଅନୁରାଗବତୀର ଗୁପ୍ତ ପ୍ରଣୟ, ଦେଶତ୍ୟାଗ ଓ ପରିଶେଷରେ ସାମାଜିକ ରୀତିରେ ବିବାହ ବିଷୟ ବର୍ଣ୍ଣିତ ହୋଇଛି ।

ଓଡ଼ିଶାରେ ପ୍ରଚଳିତ ବହୁବିଧ କାଳ୍ପନିକ କାହାଣୀ ଗୁଡ଼ିକରେ ଯେପରି ଅତିମାନବୀୟ ଘଟଣାବଳୀର ବର୍ଣ୍ଣନା କରାଯାଇଥାଏ, ସେହିପରି 'ଅନୁରାଗବତୀ' କାବ୍ୟରେ ନାୟକର ଶିରଚ୍ଛେଦ ହେବା ପରେ ବନଦେବୀଙ୍କର ଆଶୀର୍ବାଦରୁ ନବ-ଜୀବନ ଲାଭ କରିବା ଘଟଣା ତଥା ଦୋଳମଣ୍ଡପରେ ଆକସ୍ମିକ ସୈନ୍ୟ ବିଦ୍ରୋହ ଓ ସେହି ଅବସରରେ ନାୟକ ନାୟିକାଙ୍କ ସ୍ୱଦେଶ ପଳାୟନ ପ୍ରଭୃତି ଘଟଣାବଳୀ ଅସ୍ୱା-ଭାବିକ ବୋଲି ମନେହେଲେହେଁ, ତାତ୍କାଳୀନ ପାଠକର ମନୋରଞ୍ଜକ ହୋଇଥିବା ଅସମ୍ଭବ ନୁହେ । 'ଅନୁରାଗବତୀ' କାବ୍ୟଟି ଅପ୍ରକାଶିତ, ତେଣୁ ସଂକ୍ଷେପରେ ତାର ଘଟଣାବଳୀ ଏଠାରେ ପ୍ରଦତ୍ତ ହେଲା ।

ବଣିକ ଯୁବକ ଚିତ୍ରଧ୍ୱଜ ଓ କୁମାରୀ ଅନୁରାଗବତୀର ଅବୈଧ ପ୍ରଣୟ ପ୍ରକାଶ ପାଆନ୍ତେ ରାଜାଙ୍କ ପକ୍ଷରୁ ପୁରୁଷର ଶିରଚ୍ଛେଦ ଆଦେଶ ହେଲା । ପ୍ରଣୟୀଙ୍କର ଶବକୁ ଧରି ରୋଦନ କରୁଥିବାବେଳେ ଅନୁରାଗବତୀ ବନଦେବୀଙ୍କ ଆଶୀର୍ବାଦ ଲାଭକଲା, ଚିତ୍ରଧ୍ୱଜ ବଞ୍ଚିଉଠନ୍ତେ ଉଭୟେ ଶୈଳନଗରୀ ଆଡ଼କୁ ପଳାଇ ଗଲେ । ଘଟଣାକ୍ରମେ ଅନୁରାଗବତୀ ଶୈଳରାଜଙ୍କ ଦ୍ୱାରା ଅପହୃତା ହେଲା । ନାୟକ ଚିତ୍ରଧ୍ୱଜ ଅନ୍ତଃପୁରର ମାଳାଣୀ ସାହାଯ୍ୟରେ ନିଜ ପ୍ରଣୟିନୀଙ୍କ ସହିତ ଯୋଗସୂତ୍ର ସ୍ଥାପନ କରି ପାରିଲା ।

ଦୋଳ ପୂର୍ଣ୍ଣିମା ଦିନ ରାଣୀମାନେ ଦୋଳ ମଣ୍ଡପରେ ଦୋଳ ଉତ୍ସବ ଦେଖୁଥିବା ବେଳେ ହଠାତ୍ ସୈନ୍ୟମାନଙ୍କ ମଧ୍ୟରେ ବିଦ୍ରୋହ ଦେଖାଦେଲା ଏବଂ ସେହି ଅବସରରେ ଅନୁରାଗବତୀ ସେଠାରୁ ପଳାୟନ କରି ଚିତ୍ରଧ୍ୱଜଙ୍କ ସହିତ ନିଜ ଦେଶକୁ ପଳାଇଗଲା । ସ୍ୱଦେଶରେ ପହଞ୍ଚିବା ମାତ୍ରେ ମୃତବ୍ୟକ୍ତି ବଞ୍ଚି ଥିବାର ସମ୍ବାଦ ଚାରି-ଆଡ଼େ ପ୍ରଘଟ ହୋଇଗଲା । ରାଜ୍ୟର ରାଜା ସେ ଦୁହିଁଙ୍କୁ ଡକାଇ ନେଇ ଦୈବୀଶକ୍ତି ସମ୍ପନ୍ନ ବ୍ୟକ୍ତି ରୂପେ ସମ୍ବର୍ଦ୍ଧନା ଜଣାଇବା ସଙ୍ଗେ ସଙ୍ଗେ ଉଭୟଙ୍କର ବିବାହ କରାଇ ଦେଲେ ।

କାଳ୍ପନିକ କାବ୍ୟର ଧାରା ଅଷ୍ଟାଦଶ ଶତାବ୍ଦୀର ପ୍ରଖ୍ୟାତ କବି ଉପେନ୍ଦ୍ର ଭଞ୍ଜଙ୍କ ପର୍ଯ୍ୟନ୍ତ ଅବାଧ ଗତିରେ ଚାଲିଥିବା ବେଳେ ହଠାତ୍ ରାମଚନ୍ଦ୍ର ପଟ୍ଟନାୟକ କାବ୍ୟ ରାଜ୍ୟରେ ଯେଉଁ ବିପ୍ଳବ ସୃଷ୍ଟି କଲେ, ତାହା ଜନସାଧାରଣଙ୍କ ଉପରେ ବିଶେଷ ପ୍ରଭାବ ପକାଇବାର କଥା । କିନ୍ତୁ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର ପାଠକ ପାଠିକାମାନେ କବି ରାମଚନ୍ଦ୍ରଙ୍କ ପ୍ରବର୍ତ୍ତିତ, ବୈପ୍ଳବିକ ପନ୍ଥାକୁ ସମାଜ ବିରୋଧୀ କାର୍ଯ୍ୟ ରୂପେ ମନେକରି 'ଅନୁରାଗବତୀ' ଓ 'ହାରାବତୀ' କାବ୍ୟର ପ୍ରଚାର ଓ ପ୍ରସାରରେ ପ୍ରତିବନ୍ଧକ ସୃଷ୍ଟି କରିଥିବା ଆଦୌ ଅସମ୍ଭବ ନୁହେଁ । ତେଣୁ ତାତ୍କାଳୀନ କବି ସମାଜ ସେପ୍ରକାର ଚିନ୍ତାଧାରାର କାବ୍ୟ କବିତା ରଚନା କରିବାରେ ଆଦୌ ମନ ବଳାଇ ନ ଥିଲେ । ବୋଧହୁଏ ସେଇଥିଲାଗି ହାରାବତୀ ଓ ଅନୁରାଗବତୀ କାବ୍ୟର ଅନୁରୂପ କାବ୍ୟ ଓଡ଼ିଆ କାଳ୍ପନିକ କାବ୍ୟ ଭଣ୍ଡାରରେ ବିରଳ ।

ଅର୍ଜ୍ଜୁନ ଦାସ, ନରସିଂହ ସେଣ, ଲକ୍ଷ୍ମଣ ମହାନ୍ତି, କାର୍ତ୍ତିକ ଦାସ, ପ୍ରତାପ ରାୟ, ଧନଞ୍ଜୟ ଭଞ୍ଜ, ବିଷ୍ଣୁ ଦାସ, କୁଞ୍ଜବିହାରୀ ଭ୍ରମରବର, କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ, ବ୍ରଜସୁନ୍ଦର ଓ ରାଜକବି ଘନ ଭଞ୍ଜ ପ୍ରଭୃତି ପ୍ରସିଦ୍ଧ କବିମାନଙ୍କ ନାମରେ ଭଣିତ କାଳ୍ପନିକ କାବ୍ୟ ଗୁଡ଼ିକ ପରବର୍ତ୍ତୀ କବିମାନଙ୍କର ଆଦର୍ଶ ରୂପେ ପରିଗଣିତ ହେଲା ଏବଂ କଳ୍ପଲତା, ପରିମଳା, ଅନଙ୍ଗରେଖା, ମଦନ ମଞ୍ଜରୀ, ପ୍ରେମଲୋଚନା, ପ୍ରେମଶୀଳା, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ଲାବଣ୍ୟବତୀ, ରସକଳ୍ପଲତା ଓ ତ୍ରୈଲୋକ୍ୟମୋହିନୀ କାବ୍ୟର ଘଟଣାବଳୀ ତଥା ଅଳଙ୍କାର ଶାସ୍ତ୍ର ସମ୍ମତ ରଚନା ପରିପାଟୀର ଅବଲମ୍ବନରେ, ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ବିଭିନ୍ନ କବିଙ୍କ ଦ୍ୱାରା ବହୁ କାଳ୍ପନିକ କାବ୍ୟ ରଚିତ ହୋଇ ଓଡ଼ିଆ କାଳ୍ପନିକ କାବ୍ୟ ଭଣ୍ଡାରକୁ ପରିପୁଷ୍ଟ କରିବାରେ ଲାଗିଲା । ଉକ୍ତ କାବ୍ୟଗୁଡ଼ିକ ମଧ୍ୟରେ ନଳିନାକ୍ଷ ମର୍ଦ୍ଦରାଜଙ୍କ ଲାବଣ୍ୟନିଧି, ଧର୍ମଦେବ ନୃପଙ୍କ

ରଚିତ ଲାବଣ୍ୟ ତରଙ୍ଗିଣୀ, ପୁରୁଷୋତ୍ତମ କବିଙ୍କ ଲାବଣ୍ୟଲତା, ପୁରି ପଟ୍ଟନାୟକଙ୍କର ଲାବଣ୍ୟଲୀଳାବତୀ, କ୍ଷତ୍ରିୟବର ନୃପଙ୍କର କନକଲତା, କବି ଭଗବତଙ୍କ ବନଜବତୀ, ଜଗନ୍ନାଥ ନାରାୟଣ ଦେବଙ୍କ ପ୍ରଭାବତୀ ପରିଣୟ, ତ୍ରିଲୋଚନ ବଳୟାରସିଂହଙ୍କ ଚନ୍ଦ୍ରକଳା, ଗୋପୀନାଥ ଦାସଙ୍କ ମୋହନ ଲତା, ରାଜକିଶୋର ଦାସଙ୍କ ପ୍ରେମଶୀଳା, ହରିବଂଶ ରାୟଙ୍କ ପ୍ରେମ କଳ୍ପଲତା, ଦଧ୍ୟାନିଧି ଦାସଙ୍କ ପ୍ରେମଲତା, ରାଜକବି ଜନାର୍ଦ୍ଦନଙ୍କ ମାଧବ ରସାର୍ଣ୍ଣବ ଛାନ୍ଦ, ଅଭିମନ୍ୟୁଙ୍କ ରସକଳା, ସୁଲକ୍ଷଣା, ଦାଶରଥି ଦାସଙ୍କ ବିଶ୍ୱମୋହିନୀ, କବି ନଟବରଙ୍କ ରଚିତ ସୁରହ୍ନମାଳା, କବିସୂର୍ଯ୍ୟ ବଳଦେବ ରଥଙ୍କ ଚନ୍ଦ୍ରକଳା ଓ ଚନ୍ଦ୍ରଶେଖର ଭଞ୍ଜଙ୍କ ପ୍ରେମ ମଞ୍ଜରୀ ପ୍ରଭୃତି ବହୁ କାଳ୍ପନିକ କାବ୍ୟ ଶୀର୍ଷସ୍ଥାନ ଅଧିକାର କରେ ।

ଏତଦ୍‌ବ୍ୟତୀତ କାଳ୍ପନିକ ନାୟକ ନାୟିକାଙ୍କୁ ଉପଜୀବ୍ୟ କରି ଓଡ଼ିଆ ସାହିତ୍ୟରେ ପଦ୍ମା ଓ ପଦ୍ମିଆ, କୋଇଲି ଓ ଚଉତିଶା, ପାଲା ଓ ଚଟାଉ ଆଦି ବହୁ ଖଣ୍ଡକାବ୍ୟ ଓଡ଼ିଆରେ ରଚିତ ହୋଇଛି । ଏ ଗୁଡ଼ିକ ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ଆଲୋଚନା କଲେ ଜଣାଯାଏ ଯେ, ଖ୍ରୀ: ଅ: ପଞ୍ଚଦଶ ଶତାବ୍ଦୀ ଠାରୁ ଆରମ୍ଭ କରି ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଆରେ ବହୁ କାଳ୍ପନିକ କାବ୍ୟ ଓ ଖଣ୍ଡକାବ୍ୟ ରଚିତ ହୋଇ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିପାରିଛି ।

ଓଡ଼ିଆ ପୋଥି ଗୁଡ଼ିକର ଅନୁସନ୍ଧାନ ଫଳରେ ଓଡ଼ିଶାର ପୁରିପଲ୍ଲୀରୁ ବହୁସଂଖ୍ୟକ କାଳ୍ପନିକ କାବ୍ୟ ଓ ଖଣ୍ଡକାବ୍ୟର ସନ୍ଧାନ ମିଳିବା ଅସମ୍ଭବ ନୁହେଁ । ରାଜ୍ୟ ସଂଗ୍ରହାଳୟ ତଥା ରାଜ୍ୟର ବିଭିନ୍ନ ଅନୁଷ୍ଠାନ ଓ ବ୍ୟକ୍ତିବିଶେଷଙ୍କ ଦ୍ୱାରା ଯେଉଁ ସଂଗ୍ରହକାର୍ଯ୍ୟ ଚାଲିଛି ତାହା ଯଥେଷ୍ଟ ବୋଲି କୁହାଯାଇ ପାରିବ ନାହିଁ । ଏ ସମ୍ବନ୍ଧରେ ଅଧିକ ପଦକ୍ଷେପ ନେଲେ ବହୁ ନୂତନ କାବ୍ୟ ଲୋକ-ଲୋଚନର ଗୋଚରକୁ ଆସି ପାରନ୍ତା ।

## ଓଡ଼ିଆ ଅନୁବାଦ ସାହିତ୍ୟ :—

ପ୍ରାନ୍ତୀୟ ସାହିତ୍ୟର ଅଭିବୃଦ୍ଧି ଲାଗି କେବଳ ଯେ ମୌଳିକ ରଚନାର ଏକାନ୍ତ ଆବଶ୍ୟକତା ଅନୁଭୂତ ହୁଏ, ତା' ନୁହେଁ; ସେଥିଲାଗି ଆଖପାଖ ପଡ଼ୋଶୀ ରାଜ୍ୟର ସାହିତ୍ୟ ତଥା ପ୍ରାଚୀନ ସମୃଦ୍ଧ ସାହିତ୍ୟର ଅନୁବାଦ ଅତ୍ୟନ୍ତ ଆବଶ୍ୟକ । କାରଣ ପ୍ରାଚୀନ ସମୃଦ୍ଧ ସାହିତ୍ୟର ଶୈଳୀ ଓ ଭାବଧାରାକୁ ନିଜ ସାହିତ୍ୟର ଭାବଧାରା

ସ୍ୱଭାବ ଓ ଉତଃପ୍ରୋତ ଭାବରେ ମିଶାଇ ସାହିତ୍ୟିକ ପରିବେଶ ତଥା ଉନ୍ନତ ସାହିତ୍ୟିକ ମାନ ସୃଷ୍ଟି କରିବା ଅନୁବାଦକର ପ୍ରଧାନ କର୍ତ୍ତବ୍ୟ, ଅନ୍ୟଥା ସେହି ଧରଣର ଅନୁବାଦ ପାଠକଙ୍କ ମହଲରେ ଆଦୌ ସ୍ୱୀକୃତ ହୁଏନାହିଁ ।

ପ୍ରସ୍ତୁତ ଆଲୋଚନାରେ ଓଡ଼ିଆ ଅନୁବାଦ ସାହିତ୍ୟ ରୂପେ କେବଳ ପ୍ରାଚୀନ ଅନୁବାଦ ଗୁଡ଼ିକୁ ଗ୍ରହଣ କରାଯାଇଛି । ତେଣୁ ଆଧୁନିକ ଅନୁବାଦ ସାହିତ୍ୟ ସମ୍ବନ୍ଧରେ ଏଠାରେ ଆଦୌ ଆଲୋକପାତ କରାଯାଇ ନାହିଁ ।

ଅନୁବାଦ କହିଲେ ସାଧାରଣତଃ ଆକ୍ଷରିକ ଅନୁବାଦକୁ ବୁଝାଏ । ମୂଳ ରଚୟିତା ବିଷୟବସ୍ତୁକୁ ଯେପରି ଭାବରେ ଚୟନ ତଥା ବିଶ୍ଳେଷଣ କରିଥାଆନ୍ତି, ଅନୁବାଦକ କେବଳ ନିଜ ଭାଷାର ଶୈଳୀଗତ ପରିପ୍ରେକ୍ଷୀରେ ତାହାକୁ ଅବିକଳ ଭାବରେ ପ୍ରକାଶ କରିଥାଆନ୍ତି । ଅନୁବାଦ କ୍ଷେତ୍ରରେ ଅନୁବାଦକଙ୍କର ଭାବ, ଶୈଳୀ ତଥା ବର୍ଣ୍ଣନୀୟ ବିଷୟବସ୍ତୁରେ ଆଦୌ ସ୍ୱାତନ୍ତ୍ର୍ୟ ନ ଥାଏ ।

କିନ୍ତୁ ଅନ୍ୟ କେତେକ କ୍ଷେତ୍ରରେ ଅନୁବାଦକ ମୂଳ ବିଷୟର ଭାବାନୁବାଦ କରିଥାଆନ୍ତି, ଅର୍ଥାତ୍ ମୂଳ ବିଷୟବସ୍ତୁକୁ ନାମକୁ ମାତ୍ର ଗ୍ରହଣ କରି କବିମାନେ ସ୍ୱ ପ୍ରତିଭା ଅନୁସାରେ କାବ୍ୟ ବା ପୁରାଣର ଆଲେଖ୍ୟ ଅଙ୍କନ କରିଥାନ୍ତି ।

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଅନୁବାଦର ଅଭାବ ପରିଲକ୍ଷିତ ହୁଏନାହିଁ । ଯଦିଓ ଅନୁବାଦ ତୁଳନାରେ ମୌଳିକ ରଚନାର ପ୍ରାଧାନ୍ୟ ସାହିତ୍ୟର ପ୍ରତ୍ୟେକ ବିଭାବରେ ପରିଲକ୍ଷିତ ହୁଏ; ତଥାପି ପୁରାଣ,କାବ୍ୟ,ଜ୍ୟୋତିଷ, ଆୟୁର୍ବେଦ, ଧର୍ମଶାସ୍ତ୍ର ଓ ସଙ୍ଗୀତ ଆଦି କ୍ଷେତ୍ରରେ ଓଡ଼ିଆ ଅନୁବାଦକମାନେ ବହୁ ସଂସ୍କୃତ ଗ୍ରନ୍ଥର ଅନୁବାଦ ତଥା ଭାବାନୁବାଦ କରି ନିଜ ସାହିତ୍ୟର ଗ୍ରନ୍ଥ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ଉକ୍ତ ଅନୁବାଦ ସମ୍ବନ୍ଧରେ ଯଥାସମ୍ଭବ ସମୟାନୁକ୍ରମିକ ସଂକ୍ଷିପ୍ତ ଆଲୋଚନା ଏଠାରେ ପ୍ରଦତ୍ତ ହେଲା—

ଅନେକ ଲୋକଙ୍କର ଧାରଣା,ବ୍ୟାସକବି ସାରଳାଦାସ ମହର୍ଷି ବ୍ୟାସଦେବଙ୍କ ମହାଭାରତର ଅନୁବାଦ କରିଛନ୍ତି । କିନ୍ତୁ ସାରଳା ଦାସଙ୍କ ମହାଭାରତ, ରାମାୟଣ, ଚଣ୍ଡୀପୁରାଣ ଗ୍ରନ୍ଥଗୁଡ଼ିକ ଆଦୌ ଅନୁବାଦର ପର୍ଯ୍ୟାୟଭୁକ୍ତ ହୋଇପାରିବ ନାହିଁ । କାରଣ ମୂଳ ମହାଭାରତ ବା ରାମାୟଣର ପ୍ରଧାନ ଚରିତ୍ର ଗୁଡ଼ିକର ନାମୋଲ୍ଲେଖ ତଥା ଘଟଣାବଳୀର ସାରାଂଶ ବ୍ୟତୀତ ବ୍ୟାସକବି ସାରଳା ଦାସ ଅନ୍ୟ କୌଣସି

ଅଂଶ ମୂଳ ରଚନାରୁ ଅଧାହୃତ କରିନାହାନ୍ତି;ବରଂ ଘଟଣାବଳୀର ସମୟକାଳ ତଥା ସମପରିଣତି ସମ୍ବନ୍ଧରେ ସେ ବହୁ କାଳ୍ପନିକ ଅଭିମାନଗାପୂ ଘଟଣାବଳୀର ପରିପ୍ରେକ୍ଷୀରେ ସ୍ୱ ମହାଭାରତ ତଥା ରାମାୟଣକୁ ପରିପୃଷ୍ଟ କରିଛନ୍ତି ।

ସାରଳା ଦାସଙ୍କ ପର ଉତ୍କଳ-ବାଲ୍ମୀକି ବଳରାମ ଦାସ ମଧ୍ୟ 'ଜଗମୋହନ ରାମାୟଣ'ରେ ଅନୁରୂପ ବୈଶିଷ୍ଟ୍ୟର ପ୍ରତିପାଦନ କରିଅଛନ୍ତି । ଅବଶ୍ୟ ତାଙ୍କ'ଗୀତା' ପୁସ୍ତକଟିକୁ ଗୋଟିଏ ଭାବାନୁବାଦ ରୂପରୂପେ ଗ୍ରହଣ କରାଯାଇ ପାରେ ।

ଖ୍ରୀ· ଅ· ଷୋଡ଼ଶ ଶତାବ୍ଦୀର ପ୍ରସିଦ୍ଧ କବି ବଳରାମ ଦାସ ବୋଧହୁଏ ଶ୍ରୀମଦ୍ ଭଗବଦ୍ ଗୀତାର ପ୍ରଥମ ଓଡ଼ିଆ ଅନୁବାଦକ ରୂପେ ପରିଚିତ । ସେ ସଂସ୍କୃତ ଶ୍ରୀମଦ୍-ଭଗବଦ୍-ଗୀତା ପୁସ୍ତକର ଅଧ୍ୟୟନ କରି ତଦନୁସାରେ ନିଜ ଭାଷାରେ ଏକ ଅନୁବାଦ କରିଅଛନ୍ତି । ପ୍ରକୃତରେ ଦେଖିବାକୁ ଗଲେ, ଉକ୍ତ ଅନୁବାଦଟିକୁ ଭାବାନୁବାଦ କୁହାଯିବା ଅଧିକ ସମୀଚୀନ ହେବ । ଉଦାହରଣ ସ୍ୱରୂପ କେତେକ ଅଂଶ ଏଠାରେ ପ୍ରଦତ୍ତ ହେଲା—

ମୂଳଶ୍ଳୋକ—"ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ସମବେତା ଯୁଯୁତ୍ସବଃ
ମାମକାଃ ପାଣ୍ଡବାଶ୍ଚୈବ କିମକୁର୍ବନ୍ତ ସଞ୍ଜୟଃ ।"

ଅନୁବାଦ—"ଏ କୁରୁକ୍ଷେତ୍ର ଅତି ପବିତ୍ର ପୃଥ୍ୱୀରେ ଉତ୍ତମ ସ୍ଥାନ
ମୋହର ପୋଏ ପଣ୍ଡୁ ତନୟେ କଲେ କେବଣ ବିଧାନ ।
ଯୁଦ୍ଧ ଉତ୍ସୁକ ଦୁଣ୍ଡି ସବୁଲୋକ ଆରମ୍ଭି ଅଛନ୍ତି ଦ୍ୱନ୍ଦ
ତୋହର ମୁଖୁ ଶୁଣି ପ୍ରତେ ଯିବ କେହୁ ଭଲ କେହୁ ମନ୍ଦ ।"

ଏହା ପରେ ଶ୍ରୀମଦ୍-ଭଗବଦ୍-ଗୀତାର ସଞ୍ଜୟ ଉବାଚ ଠାରୁ ଆରମ୍ଭ କରି ପ୍ରଥମ ଅଧ୍ୟାୟର ଅର୍ଜୁନ ବିଷାଦ ଯୋଗର ଶେଷ ପର୍ଯ୍ୟନ୍ତ କବି ବଳରାମ ଦାସ କେବଳ ମୂଳ ପୁସ୍ତକର ଛାୟାରେ ସ୍ୱ ପ୍ରତିଭା ପ୍ରସୂତ ବର୍ଣ୍ଣନାର ଆଶ୍ରୟ ଗ୍ରହଣ କରିଛନ୍ତି । ନିମ୍ନୋକ୍ତ ଉଦାହରଣରୁ ବେଶ ସ୍ପଷ୍ଟ ହୁଏ ଯେ, କବି ବଳରାମ ଦାସ 'ଶ୍ରୀମଦ୍-ଭଗବଦ୍-ଗୀତା'ରେ ନ ଥିବା ଅନେକ ବିଷୟ ଅନୁମାନ କରି ବର୍ଣ୍ଣନା କରିଛନ୍ତି ।

"ସଞ୍ଜୟ କହେ ଶୁଣ ତୁ ରାୟେ ପ୍ରଥମ ଘାତୁ ପରବ
କୁରୁ ପାଣ୍ଡବ ଦୁଇ ବଳ ମିଳଣ କରୁଛନ୍ତି ମତ୍ତଗର୍ବ ।

ପାଣ୍ଡବ ଆଠ ଅଶ ମୁରୁଠ ସାତ ଷୋହିଣୀ ଗଣିତା
ତୋହୋ ପୁଅଙ୍କର ଏଗାର୍ ଷୋହିଣୀ କେହ୍ନୁ ନ ଯାନ୍ତି ଗଣିତା ।

ପ୍ରଳୟ ପାଣି ସମାନ ଜାଣି ବିଶଇ ଦୁଇ ସଇନ୍ୟ
ରଥ ଗଜ ଅଶ୍ୱ ପାଦାନ୍ତି ସଞ୍ଚାର ଶୁଭେ କୋଳାହଳ ଟୁନ୍ନ ।

ବୀର ଅନେକ କଣ୍ଟକ କେତେ ନାନା ଦେଶର ନୃପତି
ଚତୁରଙ୍ଗ ବଳ ମିଳିବା ଦେଖିଣ ଉଦୟେ ଅରିଷ୍ଟ ହୋନ୍ତି ।

ମରିବେ ମଲ୍ଲ ପୃଥିର ଟଳ ତେଣୁ ଉପସର୍ଗ ବିଶି
ଆପଣା ପର ଦୁହେ ହତ ହୋଇବେ ସାଧୁଲୋକ ପର ମିଶି ।

ସମସ୍ତ ହୋଇ ଶହସ୍ତ ଛୁଇଁ ନିୟମ କରି ବୋଇଲେ
ଉଜୁଆଁ ବେଳେ ପୀରତି ହୋଇବା ମାରିବା ଯୁଦ୍ଧ ହୋଇଲେ ।

ପ୍ରମାଣ କରି ବଳେ ନ ମରି ବିରଥୀ ହତ ଆୟୁଧେ
ପିଠିବା ବାଳ ବସ୍ତ୍ର ଅସମ୍ଭାଳ ତାକୁ ନ ମାରିବା ଯୁଦ୍ଧେ ।

ରଣ ସରିଲେ ଘରକୁ ଫେରି ଯେ ଯାହା ବନ୍ଧୁ ତାହାର
ହସିବା, ରସିବା, ବସିବା, ଭାଷିବା ମାୟା ନ ଥିବ କାହାର ।

ଏମନ୍ତ କଣ୍ଠ କରିଣ ଆଣ୍ଠ ସମରେ ସଜ ହୋଇଲେ
ମାର୍ଗଶୀର ମାସ ଶୁକ୍ଳ ତ୍ରୟୋଦଶୀ ଦୁଜା ନକ୍ଷତ୍ର ପାଇଲେ ।

ମଙ୍ଗଳବାରେ ସବୁ ବଗ୍ଗରେ ଯୋଗାଇଲା ସେହି ଦିନ
କୁରୁକ୍ଷେତ୍ର ମଧ୍ୟେ ମିଳି ଦୁଇବଳ ଯେ ଯାହାରେ ଭିନ୍ନ ଭିନ୍ନ ।”

ଇତ୍ୟାଦି ।

ଶ୍ରୀମଦ୍-ଭଗବଦ୍-ଗୀତାର ଆହୁରି କେତେଖଣ୍ଡି ଅନୁବାଦ ଓଡ଼ିଆରେ ହୋଇଥିବାର ଦେଖାଯାଏ । କବି ବଳରାମ ଦାସଙ୍କ ଅନୁବାଦ ପରେ କବି ଜାନକୀ-ବଲ୍ଲଭଙ୍କ ‘ଗୀତାନୁବାଦ’ ବୋଧହୁଏ ଦ୍ୱିତୀୟ ଓଡ଼ିଆ ଅନୁବାଦ ବୋଲି ଜଣାଯାଏ ।

କବି ଜାନକୀବଲ୍ଲଭ ଉତ୍ତର ବାଲେଶ୍ୱର ସୁବର୍ଣ୍ଣରେଖା ନଦୀକୂଳସ୍ଥିତ ଭୋଗରାଇ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସେ ଭଗବଦ୍ ଗୀତାରେ ନିଜ ସମ୍ବନ୍ଧରେ ନିମ୍ନଲିଖିତ ମତେ ବିବୃତି ଦେଇଛନ୍ତି ।

"ଜାନକୀ ବଲ୍ଲଭ ନାମରେ । ଯେ ଦ୍ୱିଜ ସ୍ୱର୍ଣ୍ଣରେଖା ଗ୍ରାମରେ ॥
ଯେ ବ୍ରୋଗରାଇ ନାମେ ଦେଶ । ତର୍କ୍ଷରେ ଯାଂ ଜନ୍ମ ପ୍ରକାଶ ॥
ଧୀନବତ୍ସଳ ଭଗବାନ । ତାଂଠାରେ ହେଲେ କୃପା ମନ ॥
(ଗୀତାର୍ଥସାର ଟୀକା—ଶେଷ ଅଧ୍ୟାୟ)

ରାଜ୍ୟ ସଂଗ୍ରହାଳୟରେ ସଂଗୃହୀତ 'ଗୀତାର୍ଥସାର ଟୀକା'ର ପୁଷ୍ପିକାରୁ ଜଣାଯାଏ ଯେ, କବି ଜାନକୀବଲ୍ଲଭ ଶକାବ୍ଦ ୧୭୭୭ ବା ଖ୍ରୀ: ଅ: ୧୮୫୫ରେ 'ଗୀତାର୍ଥ ସାର ଟୀକା' ଶେଷ କରିଥିଲେ । କବି ଜାନକୀବଲ୍ଲଭ ମଧ୍ୟ ଓଡ଼ିଆ ଭାଗବତର ସଂଶୋଧନ ଖ୍ରୀ: ଅ: ୧୮୫୦ରୁ ୧୮୫୩ ମଧ୍ୟରେ କରିଥିଲେ ଏବଂ ତତ୍ପରେ ସେ ରାଣୀ ଗୁଣ୍ଡିଚାଦେବୀଙ୍କ ଅନୁରୋଧରେ ଶ୍ରୀମଦ୍‌ଭଗବଦ୍-ଗୀତାକୁ ଓଡ଼ିଆ ପଦ୍ୟରେ ଅନୁବାଦ କରିଥିଲେ । 'ଗୀତାର୍ଥସାର ଟୀକା'ର ଶେଷରେ କବି ସଂସ୍କୃତରେ ତଥା ଓଡ଼ିଆରେ ନିଜ ପରିଚୟ ତଥା ସମୟ ଲେଖିଯାଇଛନ୍ତି ।

"ଶ୍ରୀମଦ୍ ଭଗବତପ୍ରିୟଂ ଶୁଭନଧ୍ୟଂ ଗୀତାଂ ନଗୂଢାର୍ଥକାଂ
ଯାଂ ବ୍ୟାସଃ ପ୍ରକଟୀଚକାର କୃପୟା ସଂସାରଣାଂ ମୁକ୍ତୟେ ।
ତସ୍ୟା ବୋଧକୃତେ ସମସ୍ତ ଜଗତାଂ ଶ୍ରୀଗୁଣ୍ଡିଚ୍ଚ ବାକ୍ୟତଃ
ତାଂ ଗୋବିନ୍ଦମୁଦେ ଲିଲେଖ ସୁଗମଂ ଶ୍ରୀ ଜାନକୀବଲ୍ଲଭଃ ॥
ଶ୍ରୀ ଗୁଣ୍ଡିଚ୍ଚ ବାପ ମୃତେନ ସିକ୍ତଃ
ଶ୍ରୀ ଜାନକୀବଲ୍ଲଭ ନାମଧେୟଃ ।
ଭାଷାନୁବନ୍ଧେନ ମୁଦେ ମୁରାରେଃ
ଗୀତାର୍ଥସାରଂ ପ୍ରକଟୀ ଚକାର ॥

× × ×

ଯେ ରାଜପତ୍ନୀ ଲକ୍ଷ୍ମୀ ଅଂଶ । ଅଶେଷ ଜନ ତାର ବଶ ॥
ସେ ରାଜପତ୍ନୀ ବାକ୍ୟ ଶୁଣି । ଏ ଭାଷା କଲି ପରିମାଣି ॥
ଗୁଣ୍ଡିଚ୍ଚ ଠାରେ ଭଗବାନ । କରୁଣା କର ଅଳ୍ପ ଦିନ ॥
ଶକାବ୍ଦ ସପ୍ତ ସପ୍ତ ରସ । ଅପରେ ସୁଧାଂଶୁ ପ୍ରକାଶ ॥

× × ×

ଶ୍ରୀ ଗୀତା ଭାଷା ପୂର୍ଣ୍ଣ ହେଲେ । ଶ୍ରୀକୃଷ୍ଣ ଯାହା ଆଜ୍ଞା ଦେଲେ ॥"

ରାଣୀ ଗୁଣ୍ଡିଚାଦେବୀଙ୍କ ସମ୍ବନ୍ଧରେ ଆଲୋଚନା କଲେ ଜଣାଯାଏ ଯେ, ମେଦିନୀପୁର ଜିଲ୍ଲାର ପଟାସପୁର ପ୍ରଗଣାର ବୈଧୁଆ ଗୋପେନ୍ଦ୍ର ନନ୍ଦନ ଦାସମହାପାତ୍ର ମହାଶୟଙ୍କ ପୂର୍ବପୁରୁଷମାନେ ଖେଜୁରିଇ ଗ୍ରାମର ଜମିଦାର ଥିଲେ । ସେମାନେ ଧନସମ୍ପତ୍ତିରେ ରାଜତୁଲ୍ୟ ହୋଇଥିବାରୁ ଲୋକମାନେ ଉକ୍ତ ଜମିଦାରଙ୍କ ବଂଶକୁ ରାଜ-ବଂଶ ନାମରେ ଅଭିହିତ କରୁଥିଲେ । ସେହି ବଂଶର ଜନୈକା ରାଣୀ ଗୁଣ୍ଡିଚାଦେବୀଙ୍କ ଆଦେଶରେ ବିପ୍ର ଜାନକୀବଲ୍ଲଭ କରଶର୍ମା, ଅତିବଡ଼ ଜଗନ୍ନାଥ ଦାସଙ୍କ 'ଭାଗବତ'କୁ ୧୭୭୫ ଶକାବ୍ଦରେ ସଂଶୋଧନ କରିଥିଲେ । ଆହୁରି ମଧ୍ୟ ଜଣାଯାଏ ଯେ, ପଣ୍ଡିତ ଜାନକୀବଲ୍ଲଭ 'ମହିମ୍ନ', ବିଷ୍ଣୁ ସହସ୍ରନାମ ଆଦି କେତେଖଣ୍ଡି ଆଧ୍ୟାତ୍ମିକ ପୁସ୍ତକର ଓଡ଼ିଆ ଅନୁବାଦ କରିଥିଲେ । *

କବି ଜାନକୀବଲ୍ଲଭ କରଶର୍ମା, ଜଗନ୍ନାଥ ଦାସଙ୍କ 'ଭାଗବତ' ଲୋକ-ମୁଖରେ ଅଶୁଦ୍ଧ ହୋଇଯାଆନ୍ତେ, ତାହାକୁ ରାଣୀ ଗୁଣ୍ଡିଚାଦେବୀଙ୍କ ନିର୍ଦ୍ଦେଶ ମତେ ଶୁଦ୍ଧକରି ପୁଣି ଥରେ ଲେଖିଥିଲେ । ଏ ପ୍ରକାର ବିଶୁଦ୍ଧ ଭାଗବତ ପୋଥି ଉତ୍ତର ଓଡ଼ିଶାରେ, ବିଶେଷତଃ ବାଲେଶ୍ୱର ଓ ମୟୂରଭଞ୍ଜ ଜିଲ୍ଲାରେ ଦେଖିବାକୁ ମିଳେ । କବି ଏ ସମ୍ବନ୍ଧରେ ସ୍ୱ ସଂଶୋଧିତ 'ଭାଗବତ'ର ନବମସ୍କନ୍ଧରେ ଲେଖିଛନ୍ତି—

"ଏବେ ହୋ ଶୁଣ ସାଧୁଜନେ । କହୁଛି ତୁମ୍ଭର ଚରଣେ ॥
ବ୍ୟାସ ଭାଷିତ ଭାଗବତ । ଭାଷାରେ କହିଲେ ସମସ୍ତ ॥
ସେ ଲେଖା ଲେଖକ ଦୋଷରେ । ଅନ୍ୟଥା ହେଲା ଏ ସଂସାରେ ॥
ସେ ବ୍ୟାସ ଜଗନ୍ନାଥ ବାଣୀ । ଯେ ରୂପେ ଥିଲେ ପରମାଣି ॥
ସେହି ରୂପେ ବିଚାରି କରଣ । ଜାନକୀବଲ୍ଲଭ ବ୍ରାହ୍ମଣ ॥
ଗୁଣ୍ଡିଚା ବାକ୍ୟ ଅନୁସରି । ଶୋଧି ଲେଖିଲେ ଯତ୍ନ କରି ॥
ପଣ୍ଡିତେ ନ ଧରିବ ଦୋଷ । ସର୍ବାନ୍ତର୍ଯ୍ୟାମି ହୃଷୀକେଶ ॥"

(ଭାଗବତ, ନବମ ସ୍କନ୍ଧର ପୁଷ୍ପିକା)

କବି ଜାନକୀବଲ୍ଲଭଙ୍କ ପୂର୍ବରୁ 'ଶ୍ରୀମଦ୍ ଭଗବଦ୍ ଗୀତା'ର ଓଡ଼ିଆ ଭାବା-ନୁବାଦ ପଞ୍ଚସଖାଙ୍କ ମଧ୍ୟରେ ଅନ୍ୟତମ ସନ୍ଥକବି ବଳରାମ ଦାସଙ୍କ ଦ୍ୱାରା ସମ୍ପାଦିତ

---

* ଉତ୍କଳ ସାହିତ୍ୟ—ଦ୍ୱିତୀୟଭାଗ, ଷଷ୍ଠସଂଖ୍ୟା, ଖ୍ରୀ: ଅ: ୧୮୯୮ରେ ପ୍ରକାଶିତ ଚନ୍ଦ୍ର-ନାରାୟଣ ଦେବଶର୍ମାଙ୍କ 'ଜାନକୀବଲ୍ଲଭ କରଶର୍ମା' ଶୀର୍ଷକ ପ୍ରବନ୍ଧ ଦ୍ରଷ୍ଟବ୍ୟ ।

ହୋଇଥିଲେହେଁ, ସେ ବିଶୁଦ୍ଧ ଭାବରେ ମୂଳପାଠର ଅବିକଳ ଅନୁବାଦ କରିଥିଲେ । କବି କରଶର୍ମା ଯଥାସମ୍ଭବ ସର୍ବଜନ-ବୋଧଗମ୍ୟ ଭାଷାରେ 'ଗୀତା' ପରି ଏକ ଦାର୍ଶନିକ ତଥ୍ୟପୂର୍ଣ୍ଣ ଗ୍ରନ୍ଥକୁ ଅନୁବାଦ କରିବାରେ ସଫଳକାମ ହୋଇଥିଲେ । ଉଦାହରଣ ସ୍ୱରୂପ 'ଗୀତା'ର ପ୍ରଥମ ଅଧ୍ୟାୟ ଅର୍ଥାତ୍ ଅର୍ଜ୍ଜୁନଙ୍କ ବିଷାଦ ବର୍ଣ୍ଣନାରୁ କିଛି ଅଂଶ ଏଠାରେ ପ୍ରଦତ୍ତ ହେଲା ।

ଅର୍ଜ୍ଜୁନ ଉବାଚ—

"ଦୃଷ୍ଟ୍ବେମାନ୍ ସ୍ୱଜନାନ୍ କୃଷ୍ଣ ! ଯୁଯୁତ୍ସୂନ୍ ସମୁପସ୍ଥିତାନ୍
ସୀଦନ୍ତି ମମ ଗାତ୍ରାଣି ମୁଖଂ ଚ ପରିଶୁଷ୍ୟତି ।
ବେପଥୁଶ୍ଚ ଶରୀରେ ମେ ରୋମହର୍ଷଶ୍ଚ ଜାୟତେ ।
ଗାଣ୍ଡୀବଂ ସ୍ରଂସତେ ହସ୍ତାତ୍ ତ୍ୱକ୍‌ଚୈବ ପରିଦହ୍ୟତେ ।
ନ ଚ ଶକ୍ନୋମ୍ୟବସ୍ଥାତୁଂ ଭ୍ରମତୀବ ଚ ମେ ମନଃ" ।

ଅନୁବାଦ— ଅର୍ଜ୍ଜୁନ ଉବାଚ—

"ଶୁଣ ହେ ପ୍ରଭୁ ଜନାର୍ଦ୍ଦନ । ସଂଗ୍ରାମେ ଦେଖି ଯେତେ ସୈନ୍ୟ ॥
ଦେଖ ଏ ସର୍ବ ବନ୍ଧୁଜନ । ସଂଗ୍ରାମ ଅର୍ଥେ ଆଗମନ ॥
ବନ୍ଧୁ କୁଟୁମ୍ବ ଜନ ଦେଖି । ମୋ ଚିତ୍ତ ହେଲା ମହାଦୁଃଖୀ ॥
କି ରୂପେ କରିବ ସଂହାର । ହେ ନାଥ କହ ଚକ୍ରଧର ॥
ମୋର ଶରୀର କମ୍ପମାନ । ରୋମ ହର୍ଷଣ ଅନୁକ୍ଷଣ ॥
ହସ୍ତୁ ଖସିଲା ଧନୁ ମୋର । ଅତି ସନ୍ତପ୍ତ କଳେବର ॥
ସଂଗ୍ରାମେ ନ ପାରିବି ରହି । ମୋ ମନ ଅତ୍ୟନ୍ତ ଭ୍ରମଇ ॥"

କେବଳ ବଳରାମ ଦାସ ଓ ଜାନକୀବଲ୍ଲଭ କରଶର୍ମା ନୁହଁନ୍ତି, ଶ୍ରୀମଦ୍ ଭଗବଦ୍ ଗୀତାର ଓଡ଼ିଆ ଅନୁବାଦ କରିବାରେ ସାଧୁଚରଣ ଦାସ, 'କୃଷ୍ଣ ସିଂହ', ଗୋପୀନାଥ ରାଜଗୁରୁ, ମଧୁସୂଦନ ମିଶ୍ର, ବିପ୍ର ନାରାୟଣ, ହରିସେବକ ଦାସ ଓ ଊନବିଂଶ ଶତାବ୍ଦୀର ଶେଷ ଦଶକର ପ୍ରଖ୍ୟାତ ବିଦ୍ୱାନ୍ ବିହାରୀଲାଲ ପଣ୍ଡିତ ପ୍ରଭୃତି ବିଦ୍ୱାନ୍‌ମାନେ ସଫଳକାମ ହୋଇଛନ୍ତି ।

ଶ୍ରୀମଦ୍ ଭାଗବତର ଅନୁବାଦକ ରୂପେ ଅତିବଡ଼ି ଜଗନ୍ନାଥ ଦାସଙ୍କୁ ପ୍ରଥମ ଅନୁବାଦକ ରୂପେ ଗ୍ରହଣ କରାଯାଏ । କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ ଅତିବଡ଼ି ଜଗନ୍ନାଥ ଭାଗବତର ଆକ୍ଷରିକ ଅନୁବାଦ କରିନାହାନ୍ତି । ସେ ମଧ୍ୟ ବଳରାମ ଦାସଙ୍କ ପରି ଶ୍ରୀମଦ୍ ଭାଗବତର ଭାବାନୁବାଦ କରିଛନ୍ତି ଏବଂ ସ୍ଥଳବିଶେଷରେ ମୂଳ ଭାଗବତର ଅଧ୍ୟାୟ ସଂଖ୍ୟାର ପରିବର୍ତ୍ତନ କରିଛନ୍ତି । ଆହୁରି ମଧ୍ୟ କୁହାଯାଏ ଯେ, ଜଗନ୍ନାଥ ଦାସ ଶ୍ରୀମଦ୍ ଭାଗବତର ଏକାଦଶ ସ୍କନ୍ଦ ସୁଦ୍ଧା ଅନୁବାଦ ଶେଷକରି, ଇହଧାମ ତ୍ୟାଗ କରିଥିଲେ ଏବଂ ତାଙ୍କ ପରେ ତାଙ୍କ ଶିଷ୍ୟ ମହାଦେବ ଦାସ ଦ୍ୱାଦଶ ସ୍କନ୍ଦର ଅନୁବାଦ ଶେଷ କରିଥିଲେ । ଭାଗବତ ଦ୍ୱାଦଶ ସ୍କନ୍ଦର ପ୍ରଥମ ଅଧ୍ୟାୟରେ ବର୍ଣ୍ଣିତ ମହାଦେବ ଦାସଙ୍କ ଉକ୍ତିରୁ ଏହାର ଯଥାର୍ଥତା ପ୍ରତିପାଦିତ ହୁଏ ।

"ସେ ନାରାୟଣ ପାଦେ ମୁହିଁ । ଶରଣ ଯାଇ ଯେ ଅଛଇଁ ।
ଦ୍ୱାଦଶ ସ୍କନ୍ଦ ଭାଗବତ । ତ୍ରୟୋଦଶ ଅଧ୍ୟା ନିମନ୍ତ ॥
ଜଗନ୍ନାଥ ଦାସ ପ୍ରକାଶ । କରିତ ଶ୍ଳୋକ ଅଛୁ ଆଶ ॥
ନାମ ମୋହର ମହାଦେବ । ବିପ୍ରର କୁଳେ ମୁଁ ସମ୍ଭବ ॥
କୃଷ୍ଣ ସଙ୍ଗତେ ଜଗନ୍ନାଥ । ଚଳିଲେ ଗୋଲୋକ ଯେ ପଥ ॥
ଏହା ମୁଁ କରଇ ବିଗ୍ରହ । ଅଷ୍ଟାଦଶ ପୁରାଣ ସାର ॥
ଦ୍ୱାଦଶ ସ୍କନ୍ଦ ତ୍ରୟୋଦଶ । ଯେମନ୍ତେ ହୋଇବ ପ୍ରକାଶ ॥
ପୁରାଣମାନଙ୍କୁ ଉଦ୍ଧାର । ସୂତ ଯା କହିଲେ ବିସ୍ତର ॥"

ଉପରୋକ୍ତ ଉଦ୍ଧୃତାଂଶରୁ ବେଶ୍ ପ୍ରମାଣିତ ହୁଏ ଯେ, କବି ଜଗନ୍ନାଥ ଦାସ ଏକାଦଶ ସ୍କନ୍ଦରେ ବର୍ଣ୍ଣିତ ଶ୍ରୀକୃଷ୍ଣଙ୍କ ଗୋଲୋକ ଯାତ୍ରା ସମ୍ବନ୍ଧୀୟ ମୂଳ ସଂସ୍କୃତର ପାଠ ପର୍ଯ୍ୟନ୍ତ ଭାବାନୁବାଦ ଶେଷକରି ନିଜେ ଇହଧାମ ତ୍ୟାଗ କରିଥିଲେ । ତାଙ୍କ ଗ୍ରନ୍ଥଟି କାଳେ ଅସମ୍ପୂର୍ଣ୍ଣ ରହିଯିବ; ସେହି ଦୃଷ୍ଟିରୁ ଭକ୍ତକବି ମହାଦେବ ଦାସ ଦ୍ୱାଦଶ ସ୍କନ୍ଦର ତେରଟିଯାକ ଅଧ୍ୟାୟର ଅନୁବାଦ କରି ଜଗନ୍ନାଥ ଦାସଙ୍କ ନାମରେ ଭଣିତା କରିବା ସଙ୍ଗେ ସଙ୍ଗେ, ପ୍ରଥମ ଅଧ୍ୟାୟରେ ନିଜ ସମ୍ବନ୍ଧରେ ଏତିକ ସୂଚନା ଦେଇଛନ୍ତି । ଏଠାରେ ପାଠକମାନଙ୍କର କୌତୂହଳ ଉପଶମ ନିମିତ୍ତ ଶ୍ରୀ ଜଗନ୍ନାଥ ଦାସଙ୍କ ଭାବାନୁବାଦର କିୟଦଂଶ ଓ ମହାଦେବ ଦାସଙ୍କ ଅନୁବାଦର କେତେକାଂଶ ଏଠାରେ ପ୍ରଦତ୍ତ ହେଲା —

"ଜନ୍ମାଦ୍ୟସ୍ୟ ଯତୋଽନ୍ୱୟାଦିତରତଶ୍ଚାର୍ଥେଷ୍ୱଭିଜ୍ଞଃ ସ୍ୱରାଟ୍ ।
ତେନେ ବ୍ରହ୍ମହୃଦା ଯ ଆଦିକବୟେ ମୁହ୍ୟନ୍ତି ଯତ୍ସୂରୟଃ ॥
ତେଜୋ ବାରିମୃଦାଂ ଯଥା ବିନିମୟୋ ଯତ୍ର ତ୍ରିସର୍ଗୋ ମୃଷା ।
ଧାମ୍ନା ସ୍ୱେନ ସଦା ନିରସ୍ତ କୁହକଂ ସତ୍ୟଂପରଂ ଧୀମହି ॥"

(ଶ୍ରୀମଦ୍‌ଭାଗବତ)

ଅନୁବାଦ— "ନମଇଁ ନୃସିଂହ ଚରଣ । ଅନାଦି ପରମ କାରଣ ॥
ଯାହାର ଆଦି ମଧ୍ୟ ଅନ୍ତେ । ବିଗ୍ରହ ନ ଘଟେ ଜଗତେ ॥
ଇନ୍ଦ୍ରିୟ ଅର୍ଥ ନ ଜାଣନ୍ତି । ସତ୍ୟ ଯେ ନିତ୍ୟ ପ୍ରକାଶନ୍ତି ॥
ଆନନ୍ଦ ମନେ ବେଦସାର । ବ୍ରହ୍ମାରେ କଲେ ଯେ ନିସ୍ତାର ॥
ଯାର ସ୍ୱରୂପ ହୃଦେ ଚିନ୍ତି । ବେଦ ପୁରୁଷ ନ ଜାଣନ୍ତି ॥
ମୃତ୍ତିକା ବିକାର ଯେମନ୍ତ । ଜଳ ଅନଳେ ସୁଯନ୍ତ୍ରିତ ॥
ରୂପ ଅରୂପ ସୃଷ୍ଟି ତିନ । ଯାହା ଯୋଗରେ ଅନୁମାନ ॥
ସ୍ୱଭାବେ ନୋହେ ଯେ ଏମନ୍ତ । ଏ ସାଂଖ୍ୟ ଯୋଗୀଙ୍କର ମତ ॥
ଆତ୍ମା ପ୍ରକାଶେ ଜନ୍ମ ହୋଇ । ନିରତେ କୁହୁକ ବୋଲଇ ॥
ସତ୍ୟ ପରମାନନ୍ଦ ହରି । ଯାହା ଭାବିଲେ ଭବୁଁ ତରି ॥
ତାର ଚରଣେ ନିତ୍ୟ ଧ୍ୟାନ । କରି ତରନ୍ତି ସୁଜ୍ଞଜନ ॥"

(ଜଗନ୍ନାଥ ଦାସଙ୍କ ଅନୁବାଦ)

"ଯୋଽନ୍ତ୍ୟଃ ପୁରଞ୍ଜୟୋ ନାମ
ଭବିଷ୍ୟୋ ବାରହଦ୍ରଥଃ ।
ତସ୍ୟାମାତ୍ୟସ୍ତୁ ଶୁନକୋ
ହତ୍ୱା ସ୍ୱାମିନମାତ୍ମଜମ୍ ॥
ପ୍ରଦ୍ୟୋତ ସଂଜ୍ଞଂ ରାଜାନଂ
କର୍ତ୍ତା ଯତ୍ପାଲକଃ ସୁତଃ ।
ବିଶାଖ ଯୂପସ୍ତତ୍ପୁତ୍ରୋ
ଭବିତା ରାଜକସ୍ତତଃ ॥"

(ସଂସ୍କୃତ ଭାଗବତ-ଦ୍ୱାଦଶସ୍କନ୍ଦ, ପ୍ରଥମ ଅଧ୍ୟାୟ)

× × ×

"ବୃହଦ୍ରଥ ରାଜାର ବଂଶ ।
ପୁରଞ୍ଜୟ ନାମେ ରାଜନ । ହୋଇବ କଳିରୁ ଦିନ ପୁଣ ।
ତା ମନ୍ତ୍ରୀ ଶୁନକ ବ୍ରାହ୍ମଣ । ସେ ପୁରଞ୍ଜୟକୁ ମାରିଣ ।
ଆପଣା ପୁତ୍ରକୁ ସ୍ଥାପିବ । ବଳେ ପୃଥିବୀ ଆକର୍ଷିବ ।
ତାହାର ନାମ ଯେ ପ୍ରଦ୍ୟୋତ । ପାଳକ ତାହାର ନିଜ ପୁତ୍ର ।
ବିଶାଖ ତାହାର କୁମର । ରାଜନ ଜନ୍ମ ତା ବଂଶର ।"

(ମହାଦେବ ଦାସଙ୍କ ଅନୁବାଦ)

ଶ୍ରୀମଦ୍ ଭାଗବତର ଅନୁବାଦ କାର୍ଯ୍ୟରେ ମଧୁସୂଦନ ମିଶ୍ରଙ୍କ ପୁତ୍ର ଦୀନବନ୍ଧୁ ମିଶ୍ର, ବୈଷ୍ଣବ ଜୟରାମ ଦାସଙ୍କ ପ୍ରଭାବରେ ଗୌଡ଼, ବାରାଣସୀ ଓ ଉତ୍କଳ; ଏହି ତିନିସ୍ଥାନର ସଂସ୍କୃତ ଭାଗବତ ଏକତ୍ରିତ କରି ଶ୍ରୀମଦ୍ ଭାଗବତର ଅନୁବାଦ କରିଥିଲେ। କବି ଦୀନବନ୍ଧୁଙ୍କ ରାଜଦତ୍ତ ପଦବୀ ଥିଲା 'ଖଡ୍‌ଗରାୟ' ବା 'ଖାଡ଼ଙ୍ଗା'। ସେ ଖଣ୍ଡପଡ଼ାର ପ୍ରସିଦ୍ଧ ରାଜା ନାରାୟଣ ମଙ୍ଗରାଜଙ୍କ ସମୟରେ ସେଠାକାର ରାଜ ଦରବାରରେ ରହି ଶ୍ରୀମଦ୍ ଭାଗବତର ଅନୁବାଦ କରିଥିବାର ପ୍ରମାଣ ମିଳେ। କବି ଦୀନବନ୍ଧୁ ନିଜର ପରିଚୟ ସୂଚକ କେତୋଟି ପଙ୍‌କ୍ତି ଭାଗବତରେ ଉଲ୍ଲେଖ କରିଛନ୍ତି–

"ଶ୍ରୀପୁରୁଷୋତ୍ତମ ନିକଟ । ବ୍ରାହ୍ମଣ ଶାସନ ପ୍ରକଟ ।
ତା ନାମ ବାମଦେବ ପୁର । କୌତ୍ସସ ମାନଙ୍କ ମନ୍ଦିର ।
ଯେ ବାମଦେବ ବାଜପେୟୀ । ସେ ଗ୍ରାମ ଥିଲେ ଦାନ ପାଇ ।
ଯେ ବାଜପେୟୀ ସର୍ବେଶ୍ୱର । ଅଟନ୍ତି ତାହାଙ୍କ କୁମର ।
ତାହାଙ୍କ ସୁତ ବାଜପେୟୀ । ଯେ ଦୁର୍ଗା ଦାସ ନାମ ହୋଇ ।
ବାହୁଜ ଦୀକ୍ଷିତ ନାମରେ । ସମ୍ଭବ ତାହାଙ୍କ କୁମରେ ॥
ତାଙ୍କ ତନୁଜ ଜୀବ ଦାସ । ମିଶ୍ର ନାମରେ ସେ ପ୍ରକାଶ ।
ମଧୁସୂଦନ ତାଙ୍କ ସୁତ । ସେ ମଧୁସୂଦନ ମୋ ତାତ ।
ମୋହର ଦୀନବନ୍ଧୁ ନାମ । ଯେ ବୈତରଣୀ ତଟେ ଗ୍ରାମ ।
ମୁକୁନ୍ଦପୁର ନାମେ ଖ୍ୟାତ । ସେ ଗ୍ରାମ ଅଟଇ ଯେ ସ୍ଥିତ ।
ବୈଷ୍ଣବ ବୃନ୍ଦାବନ ଦାସ । ଶ୍ରୀକୃଷ୍ଣ ଭକ୍ତିରେ ଲାଳସ ॥
ଶ୍ରୀ ନିତ୍ୟାନନ୍ଦ ପରିବାର । ଅଟନ୍ତି ଅତି ଶୁଦ୍ଧାଚାର ।

ଯେ ଅଟେ ତାହାଙ୍କର ଶିଷ୍ୟ । ବୈଷ୍ଣବ ଜୟରାମ ଦାସ ॥
ତାଙ୍କ ପ୍ରୀତିରେ ବଶ ହେଲି । ଭାଗବତଙ୍କୁ ଗୀତ କଲି ॥
ଗୌଡ଼ ବାରାଣସୀ ଉତ୍କଳ । ଏ ତିନ ଦେଶ ପୋଥି ଟୁଳ ॥
କରଣ ଶୁଦ୍ଧାଶୁଦ୍ଧ ଜାଣି । ଗୀତକୁ ରଚିଲି ପ୍ରମାଣି ॥"

(ଖାଡ଼ଙ୍ଗା ଭାଗବତ—ପ୍ରଥମ ଖଣ୍ଡ ଶେଷ ଅଧ୍ୟାୟ)

ଅନ୍ୟାନ୍ୟ ପୁରାଣ ଗୁଡ଼ିକର ଅନୁବାଦ ଓ ଭାବାନୁବାଦ କ୍ଷେତ୍ରରେ ଯେଉଁ କୃତବିଦ୍ୟ ଓଡ଼ିଆ ଲେଖକମାନେ ଓଡ଼ିଶାରେ ସୁପରିଚିତ, ସେମାନଙ୍କ ମଧ୍ୟରେ ଅଧ୍ୟାତ୍ମ ରାମାୟଣର ଅନୁବାଦକ ହଳଧର ଦାସ, ଗୋପାଳ ତେଲେଙ୍ଗା, ଦାମୋଦର ଦାସ, ଗୋପୀନାଥ ଦାସ; ଆର୍ଷ ରାମାୟଣର ଅନୁବାଦକ କୃଷ୍ଣଚନ୍ଦ୍ର ରାଜେନ୍ଦ୍ର; ଇତିହାସ ପୁରାଣର ଅନୁବାଦକ କୃଷ୍ଣଚନ୍ଦ୍ର ଦାସ; ଏକାଦଶୀ ମାହାତ୍ମ୍ୟର ଅନୁବାଦକ ହରେକୃଷ୍ଣ ଚକ୍ରକର, ଦ୍ୱିଜ ହରି, ଘନକୃଷ୍ଣ ଦାସ, ଜଗନ୍ନାଥ ଦାସ, ଦିବାକର ଦାସ; କପିଳ ସଂହିତାର ଅନୁବାଦକ ନୀଳକଣ୍ଠ ଦାସ; କାର୍ତ୍ତିକ ମାହାତ୍ମ୍ୟର ଅନୁବାଦକ ମହାଦେବ ଦାସ, ଦୟାନିଧି ଦାସ, ବାବାଜୀ ଗୋବିନ୍ଦ ଦାସ, ପୁରୁଷୋତ୍ତମ ଦାସ; ପଦ୍ମ ପୁରାଣର ଅନୁବାଦକ ନୀଳାମ୍ବର ଦାସ; ଗରୁଡ଼ ପୁରାଣର ଅନୁବାଦକ ଘନଶ୍ୟାମ ପଟ୍ଟନାୟକ, ଦ୍ୱିଜ ଗଙ୍ଗାପାଣି; ମହାଭାରତର ଅନୁବାଦକ କୃଷ୍ଣ ସିଂହ, କପିଳେଶ୍ୱର ନନ୍ଦ, ଗୋବିନ୍ଦଚନ୍ଦ୍ର ମହାପାତ୍ର; ମାର୍କଣ୍ଡେୟ ପୁରାଣର ଅନୁବାଦକ ମହାଦେବ ଦାସ, ନରସିଂହ ଦାସ; ମାଘ ମାହାତ୍ମ୍ୟର ଅନୁବାଦକ କୃଷ୍ଣ ଦାସ, ଗୋପୀ ଦାସ; ମାର୍ଗଶୀର ମାହାତ୍ମ୍ୟର ଅନୁବାଦକ କୃପାସିନ୍ଧୁ ଦାସ; ରାମାୟଣର ଅନୁବାଦକ କୃଷ୍ଣ ଚରଣ ପଟ୍ଟନାୟକ; ବିଷ୍ଣୁ ପୁରାଣର ଅନୁବାଦକ ପଦ୍ମନାଭ ଦାସ, ପ୍ରହ୍ଲାଦ ଦାସ, ବଳଭଦ୍ର ନାରାୟଣ ବେହେରା ମହାପାତ୍ର; ବୈଶାଖ ମାହାତ୍ମ୍ୟର ଅନୁବାଦକ ଜଗନ୍ନାଥ ମର୍ଦ୍ଦରାଜ, ରାମପ୍ରସାଦ ଦାସ, ମଧୁସୂଦନ ହରିଚନ୍ଦନ, ବିପ୍ର ମଧୁ ଦାସ, ହରିପ୍ରସାଦ ଦାସ; ଶିବ ପୁରାଣର ଅନୁବାଦକ ଭଗୀରଥି ଦାସ, ଦ୍ୱାରିକା ଦାସ, ମନବୋଧ ଦାସ; ଶ୍ରୀକ୍ଷେତ୍ର ମାହାତ୍ମ୍ୟର ଅନୁବାଦକ ଜୟ ସିଂହ, ମହେଶ୍ୱର ଓ ସ୍ୱର୍ଣ୍ଣାଦ୍ରି ମହୋଦୟର ଅନୁବାଦକ କପିଳେଶ ନନ୍ଦ ପ୍ରଭୃତି ବିଶେଷ ଖ୍ୟାତି ଅର୍ଜନ କରିଥିଲେ । ଏତଦ୍‌ବ୍ୟତୀତ ଲହରୀ ହରିବଂଶ, ନୃସିଂହ ପୁରାଣ, ପୂର୍ଣ୍ଣରାମାୟଣ, ଦାମୋଦର ପୁରାଣ ଆଦି ଗ୍ରନ୍ଥଗୁଡ଼ିକର ରଚୟିତା ଯଥାକ୍ରମେ ଅଚ୍ୟୁତାନନ୍ଦ ଦାସ, ପୀତାମ୍ବର ଦାସ, କେଶବ ତ୍ରିପାଠୀ, ଗୌରାଙ୍ଗ ଦାସ; ସାରଳା ଦାସ, ବଳରାମ ଦାସ ଓ ଜଗନ୍ନାଥ ଦାସଙ୍କ ପନ୍ଥା ଅନୁସରଣ କରି ମୂଳ ସଂସ୍କୃତ ଗ୍ରନ୍ଥର ଛାୟାରେ ଖଣ୍ଡିଏ ଖଣ୍ଡିଏ ସ୍ୱତନ୍ତ୍ର ପୁରାଣ ଗ୍ରନ୍ଥ ରଚନା କରିଛନ୍ତି ।

ଖ୍ରୀଷ୍ଟୀୟ ଷୋଡ଼ଷ, ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀ ମଧ୍ୟରେ ସଂସ୍କୃତ ଭାଷାରେ ଲିଖିତ ଧର୍ମଶାସ୍ତ୍ର, ଦର୍ଶନ, ଜ୍ୟୋତିଷ, ଆୟୁର୍ବେଦ, ଗଣିତ ଓ ସଙ୍ଗୀତ ଗ୍ରନ୍ଥ ଗୁଡ଼ିକର ଓଡ଼ିଆରେ ଅନୁବାଦ କରାଯାଇଥିଲା । ରାଜ୍ୟ ସଂଗ୍ରହାଳୟରେ ସଂଗୃହୀତ ତାଳପତ୍ର ପୋଥି ମଧ୍ୟରେ ପ୍ରସିଦ୍ଧ ଧର୍ମଶାସ୍ତ୍ର ପରାଶର ସଂହିତା, ଭକ୍ତି ରତ୍ନାବଳୀ (ଅନୁବାଦକ—ଭୀମ ଦାସ), ଶ୍ରୀନିବାସ ଦୀପିକା; ପ୍ରସିଦ୍ଧ ଦର୍ଶନ ଗ୍ରନ୍ଥ ବେଦାନ୍ତ ରତ୍ନାବଳୀ (ଓଡ଼ିଆ ଅନୁବାଦକ—ରାମଚନ୍ଦ୍ର ହାରବର ହରିଚନ୍ଦନ), ସିଦ୍ଧାନ୍ତସାର (ଓଡ଼ିଆ ଅନୁବାଦକ—କୃଷ୍ଣ ପାଠ), ସିଦ୍ଧାନ୍ତ ବିନ୍ଦୁସାର; ସୁପ୍ରଚଳିତ ଜ୍ୟୋତିଷ ଗ୍ରନ୍ଥ କାଳଜ୍ଞାନ, କେରଳଦଶା (ଅନୁବାଦକ — ତ୍ରିପୁରାରି ଦାସ), କେରଳ ଦଶାରୋପଣ (ଅନୁବାଦକ—ଯଦୁମଣି କବିରାଜ), କେରଳସୂତ୍ର, ଗ୍ରହଚକ୍ର (ଅନୁବାଦକ—ମାଗୁଣୀ ପାଠୀ), ଜାତକାଳଙ୍କାର, ଜ୍ୟୋତିଷ ସାର ସଂଗ୍ରହ, ନବଗ୍ରହ ଦଶା ଫଳ, ବାଳବୋଧ ରତ୍ନକୌମୁଦୀ, ଭାସ୍ୱତି (ଅନୁବାଦକ ତ୍ରିଲୋଚନ ମହାନ୍ତି), ଲଘୁ ସିଦ୍ଧାନ୍ତ (ଅନୁବାଦକ ଚୈତନ୍ୟ ମହାନ୍ତି) ଶ୍ରୀପତି ପଦ୍ଧତି, ସାର ସଂଗ୍ରହ ଓ ଭାସ୍କରାଚାର୍ଯ୍ୟଙ୍କ ସୂର୍ଯ୍ୟସିଦ୍ଧାନ୍ତ (ଅନୁବାଦକ—ନମ୍ବଦେବ); ସୁଖ୍ୟାତ ଆୟୁର୍ବେଦ ଗ୍ରନ୍ଥ ଅଭିନବ ଚିନ୍ତାମଣି, ଆରୋଗ୍ୟ ଚିନ୍ତାମଣି, ଚକ୍ରଦତ୍ତ, ଚିକିତ୍ସାମଞ୍ଜୁଷା, ବୈଦ୍ୟଜୀବନ, ବୈଦ୍ୟସାରସ୍ୱତ, ଶାଳୀହୋତ୍ର ରୋଗ ନିଦାନ (ଅନୁବାଦକ—ଦୀନବନ୍ଧୁ ହରିଚନ୍ଦନ) ଓ ମାଧବକର ନିଦାନ; ଭାସ୍କରାଚାର୍ଯ୍ୟଙ୍କ ସୁପ୍ରତିଷ୍ଠିତ ଗଣିତ ଗ୍ରନ୍ଥ ଲୀଳାବତୀ (ଅନୁବାଦକ—ଦୀନକୃଷ୍ଣ ମହାନ୍ତି, କୃଷ୍ଣ ମଙ୍ଗରାଜ, ଧନଞ୍ଜୟ ଦ୍ୱିଜ), ବୀଜଗଣିତ (ଅନୁବାଦକ ମାଗୁଣୀ ପାଠୀ); ସୁରସିକ ପାଠକମାନଙ୍କର ଆଦରଣୀୟ ସଂଗୀତ ଗ୍ରନ୍ଥ ଅଭିନୟ ଦର୍ପଣ ପ୍ରକାଶ, ନାଟ୍ୟ ମନୋରମା, ଗୀତପ୍ରକାଶ (ଅନୁବାଦକ—ଗଦାଧର ଦାସ), ସଙ୍ଗୀତ ନାରାୟଣ (ଅନୁବାଦକ—ସଦାଶିବ) ଆଦି ଗ୍ରନ୍ଥଗୁଡ଼ିକର ଓଡ଼ିଆ ଅନୁବାଦ ପୁସ୍ତକ ସଂରକ୍ଷିତ ହୋଇଛି ।

ଆଲୋଚନାରୁ ଜଣାଯାଏ ଯେ, ସଂସ୍କୃତ ସାହିତ୍ୟର ସୁପ୍ରତିଷ୍ଠିତ କାବ୍ୟ ଗୁଡ଼ିକ ଓଡ଼ିଆ ଭାଷାରେ ଅନୁବାଦିତ ହୋଇଥିଲା । ଏହି ଅନୁବାଦ ଗୁଡ଼ିକ ମଧ୍ୟରେ ବିହ୍ଲଣଙ୍କ ରଚିତ ଚୌରପଞ୍ଚାଶିକା, ଜୟଦେବଙ୍କ ଗୀତଗୋବିନ୍ଦ, ଭୋଜଦେବଙ୍କ ରାମାୟଣ ଚମ୍ପୂ, କବି ଅମରୁକଙ୍କ ଅମରୁଶତକ, ହିତୋପଦେଶ, ହଂସଦୂତ, ହନୁମନ୍ନାଟକ ଆଦି ପ୍ରଧାନ । କାଶ୍ମୀରୀୟ କବି ବିହ୍ଲଣଙ୍କ ରଚିତ ଚୌରପଞ୍ଚାଶିକା ସଂସ୍କୃତ କାବ୍ୟ-ଜଗତରେ ଏକ ରସାଣିତ କାବ୍ୟ ରୂପେ ସୁପରିଚିତ । ଏହି କ୍ଷୁଦ୍ର ପୁସ୍ତକଟି ରାଜକବି ଧନଞ୍ଜୟ ଭଞ୍ଜଙ୍କ ଦ୍ୱାରା ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀରେ ଅନୁ-

ବାଧିତ ହୋଇଥିଲା । କବି ଧନଞ୍ଜୟ ସ୍ୱରଚିତ 'ଇଚ୍ଛାବତୀ' କାବ୍ୟରେ ବିରହ ବର୍ଣ୍ଣନା କରିବାକୁ ଯାଇ ଚୌରପଞ୍ଚାଶିକାର ଶ୍ଳୋକଗୁଡ଼ିକର ଅନୁବାଦ କରି ଇଚ୍ଛାବତୀ କାବ୍ୟର ଷଷ୍ଠ, ସପ୍ତମ, ଅଷ୍ଟମ, ନବମ ଓ ଦଶମ ଛାନ୍ଦରେ ସନ୍ନିବେଶିତ କରିଛନ୍ତି । ଧନଞ୍ଜୟ ଭଞ୍ଜଙ୍କ ଅନୁବାଦ କୁଶଳତାର ପ୍ରମାଣ ସ୍ୱରୂପ ଏଠାରେ ଦୁଇଟି ଶ୍ଳୋକର ଅନୁବାଦ ପ୍ରଦତ୍ତ ହେଲା—

ଶ୍ଳୋକ— "ହେ ପାନ୍ଥ ! ଚିନ୍ତାକୁଳଚିତ୍ତମୂଢ !
କିଂ ପ୍ରୋଷି ବାଳାମବଳାଂ କୃଶାଙ୍ଗୀମ୍ ।
ଅର୍ଥଂ ଯଦି ପ୍ରାର୍ଥୟସେ ଭଜେଶଂ
ମୋକ୍ଷଂ ଚ ଲକ୍ଷ୍ମୀପତିମମ୍ବୁଜାତମ୍ ।"

ଗୀତ— "ଆହେ ପଥିକ ଚିନ୍ତା ଆକୁଳିତ
ମୂର୍ଖପଣରେ ତୁ କହୁ ଏମନ୍ତ ।
ମୁଁ ଅବଳା ଜନ,
ମୋତେ କିମ୍ପା କହୁ ଛୁଟି ବଚନ ।
ଧନେ ଇଚ୍ଛା ଥିଲେ ଭଜ ଶଙ୍କର
ଯାହାର ଆଜ୍ଞାରେ ଅଛି କୁବେର,
ମୋକ୍ଷକୁ ଯେବେ ଅଛି ତୋ ବିଚାର
ତେବେ ବେଗେ ଭଜ କମଳା-ବର
ଏହା ଗୂଢ଼ ଶୁଣି,
ବୋଇଲା ଶୁଣରେ ରମଣୀମଣି ।"

ଶ୍ଳୋକ—

କାଳିନ୍ଦୀତଟସନ୍ନିଧାବୁପବନେ
ଗୋପାଙ୍ଗନାଲିଙ୍ଗନ
କ୍ରୀଡ଼ାକର୍ଷଣଚୁମ୍ବନାଦିରୁଚିତଃ
ସଂସୂଚିତୋ ବେଣୁନା ।

ସ୍ନିଗ୍ଧା କଲ୍ପମହୀରୁହାଶ୍ରିତଲତା-
ବାସେ ସୁପୁଷ୍ପାନ୍ୱିତେ,
ନାନା-ଭୂଷଣ-ଭୂଷିତୋ ବହ୍ୱସିତଃ
କୃଷ୍ଣଃ ପ୍ରସନ୍ନୋଽସ୍ତୁ ମାମ୍ ।’

ଗୀତ—“କାଳନ୍ଦୀ ତଟ ପାଶ ଉପବନେ
ଗୋପାଙ୍ଗନା-କେଳିରସ ବିଧାନେ,
ଚୁମ୍ବନ ଆଶ୍ଳେଷ ମହା ମଧୁର
ମୃଦୁ ମୃଦୁ ବେଣୁ ନାଦେ ରୁଚିର,
ସେ କୃଷ୍ଣ ଚରଣ,
ନୃପ ଧନଞ୍ଜୟ ଭଞ୍ଜ ଶରଣ ।”

(ଇଚ୍ଛାବତୀ—ଷଷ୍ଠ ଛାନ୍ଦ)

ଓଡ଼ିଆ କବି ଜୟଦେବଙ୍କ ରଚିତ ଗୀତଗୋବିନ୍ଦ କାବ୍ୟଟି କେବଳ ଭାରତରେ କାହିଁକି, ସମଗ୍ର ବିଶ୍ୱରେ ଏକ ଶ୍ରେଷ୍ଠ ଗୀତ-କାବ୍ୟ ରୂପେ ସୁପରିଚିତ । ଏହି ବିଶ୍ୱବିଖ୍ୟାତ କାବ୍ୟର ଅନୁବାଦ, ପୃଥିବୀର ବହୁ ଭାଷାରେ ହୋଇଛି । ଓଡ଼ିଶାର ପୁରପଲ୍ଲୀରେ ମୂଳ ‘ଗୀତଗୋବିନ୍ଦ’ର ପ୍ରଚାର ଓ ପ୍ରସାର ଯଥେଷ୍ଟ ହୋଇଥିଲେ ହେଁ, ଓଡ଼ିଆ ଭାଷା ଓ ଓଡ଼ିଶାରେ ପ୍ରଚଳିତ ଛାନ୍ଦ ପରିବେଷଣ ପୂର୍ବକ କେତେଜଣ ଓଡ଼ିଆ କବି ତା’ର ଅନୁବାଦ ଓ ଭାବାନୁବାଦ କରିଛନ୍ତି ।

ପ୍ରାଚୀନ ଓଡ଼ିଆ ଅନୁବାଦକ ବୃନ୍ଦାବନ ଦାସ ‘ରସ ବାରିଧି’ ଶୀର୍ଷକ ପୁସ୍ତକରେ ‘ଗୀତଗୋବିନ୍ଦ’ର ଅନୁବାଦ କରିଛନ୍ତି । କବି ବୃନ୍ଦାବନ ଦାସ ମୂଳ ଗୀତଗୋବିନ୍ଦର ଶ୍ଳୋକ ପଦଗୁଡ଼ିକୁ ସାମାନ୍ୟ ଓଲଟପାଲଟ କରି ନିଜ ପୁସ୍ତକରେ ସନ୍ନି-ବେଶିତ କରିଛନ୍ତି ।

କବି ବୃନ୍ଦାବନ ଦାସଙ୍କ ପରେ କବି ଧରଣୀଧର ‘ଗୀତଗୋବିନ୍ଦ’ର ବାରଟି ସର୍ଗକୁ ଷୋହଳ ଛାନ୍ଦରେ ଅନୁବାଦ କରି, ସେଥିରେ କେଦାର, ମାଳବ, ଗୁର୍ଜ୍ଜରୀ ଆଦି ବହୁ ରାଗ ରାଗିଣୀର ସମାବେଶ କରାଇଛନ୍ତି । କବି ଧରଣୀଧର ଅନ୍ୟାନ୍ୟ

କେତେକ ସ୍ଥଳରେ ମୂଳ ଗୀତଗୋବିନ୍ଦ ପାଠର ଭାବାନୁବାଦ କରିଥିଲେ ହେଁ, 'ମେଘୈର୍ମେଦୁରଂ' ଶ୍ଳୋକର ଅନୁବାଦ ଅତ୍ୟନ୍ତ ସରଳ ତଥା ସର୍ବଜନବୋଧ ଭାଷାରେ କରିଛନ୍ତି ।

"ମାୟା ରଚିଲେ ଦେବ ମାୟାଧର । ମେଘ ଅଚ୍ଛାଦିଲା ଆସି ଅମ୍ବର ।
ନବଘନ ଘଳ ମେଘ ପ୍ରକାଶିଲା । ବିପିନ ଗିରି ଶ୍ୟାମଳ ଦିଶିଲା ।
ଘାଳତମାଳ ତରୁ ଘନଲତା । ଦେଖିଣ ନନ୍ଦ ପାଇଲେକ ଚିନ୍ତା ।
ରାଧାଙ୍କୁ ଡାକିଲେ ବ୍ରଜପତି । ଗୋଡ଼ାଇ ଅଇଲା ତ ଏ ଶ୍ରୀପତି ।
ନିଶାରେ ଗୋଗୋଷ୍ଠେ କରିବ ଭୟ । ଗୃହେ ପ୍ରବେଶ କରାଅ ତନୟ ।
ଏମନ୍ତ ନନ୍ଦର ଆଦେଶ ଘେନି । ଚଳିଗଲେ ରାଧାମାଧବ ବେନି ।
ଯମୁନା କୂଳେ ଘନ ତରୁବର । ଲତା ନିକୁଞ୍ଜ ଗୃହରି ଆକାର ।
ନିର୍ଜନ ପ୍ରସର ଭୂମିରେ ମିଳି । ନିକୁଞ୍ଜେ ନିକୁଞ୍ଜେ କରନ୍ତି କେଳି ।"

ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ପଣ୍ଡିତ ଜଗନ୍ନାଥ ମିଶ୍ର 'ଗୀତଗୋବିନ୍ଦ'ର କାନ୍ତକୋମଳ ପଦାବଳୀକୁ ସରଳ ସୁବୋଧ ଓଡ଼ିଆ ଗଦ୍ୟରେ ଅନୁବାଦ କରିଛନ୍ତି । ଖୁବ୍ ସମ୍ଭବତଃ ପଣ୍ଡିତ ଜଗନ୍ନାଥ ମିଶ୍ରଙ୍କ ଅନୁବାଦଟି 'ଗୀତଗୋବିନ୍ଦ'ର ପ୍ରଥମ ଓଡ଼ିଆ ଗଦ୍ୟାନୁବାଦ । ଜଗନ୍ନାଥ ମିଶ୍ରଙ୍କ 'ମେଘୈର୍ମେଦୁରଂ' ଶ୍ଳୋକର ଅନୁବାଦ ଏଠାରେ ପ୍ରଦତ୍ତ ହେଲା—

"ନନ୍ଦ ବୋଲୁଛନ୍ତି, ହେ ରାଧେ ଦେଖ, ଦେଖ; ମେଘେ କରି ଅମ୍ବର ଯେ ଆକାଶ ସେ ମେଦୁର ଅତି ସ୍ନିଗ୍ଧ ହୋଇଁ ତାଙ୍କ ହୋଇଲାରେ ଏଣେ ବନଭୂମି ମାନେ ତମାଳ ବୃକ୍ଷମାନେ ଏ ମେଘ ପ୍ରକାଶେ ଅତ୍ୟନ୍ତ ଶ୍ୟାମଳ କଳା ଦିଶିଲେ । ଏ ବାଳକ ରାତ୍ରକୁ ବଡ଼ ଭୟ କରଇ । ଏ କାରଣୁ ଏ ବାଳକକୁ ନେଇଁ ତୁମ୍ଭେ ଗୃହେ ପ୍ରବେଶ କର । ଏ ପ୍ରକାରେ ନନ୍ଦର ଆଜ୍ଞା ପ୍ରମାଣେ କୃଷ୍ଣଙ୍କୁ ଘେନି ଯାଉଁଥିଲେ ଯେ ରାଧା ସେ ପ୍ରତିମାର୍ଗେ କୁଞ୍ଜଲତା ଗୃହକୁ ଚଳିଗଲେ ଯେ, ରାଧାମାଧବ ତାହାଙ୍କର ଯମୁନା କୂଳେ ଏକାନ୍ତ ହୋଇଁ କେଳିମାନ ହୋଇଲେ ସେମାନେ ଜୟନ୍ତି ଜଗତକୁ ଜୟ କରନ୍ତୁ ।"

ବଳଭଦ୍ର ଦାସ ନାମକ ଅନ୍ୟ ଏକ କବି ଗଜପତି ମୁକୁନ୍ଦଦେବଙ୍କ ଏକୋଇଶ ଅଙ୍କରେ ଅଶୋକଗୋଲା ଗଡ଼ରେ ରହି 'ଅର୍ଥଗୋବିନ୍ଦ' ନାମକ ପୁସ୍ତକ ପ୍ରଣୟନ

କରିଥିଲେ । ଉକ୍ତ ପୁସ୍ତକରେ କବି ବଳରାମ ଦାସ 'ଗୀତଗୋବିନ୍ଦ'ର ଭାବାନୁବାଦ କରିଛନ୍ତି । 'ଅର୍ଥଗୋବିନ୍ଦ' ପୁସ୍ତକଟି ସପ୍ତବିଂଶ ଅଧ୍ୟାୟରେ ସମ୍ପୂର୍ଣ୍ଣ ହୋଇଛି ।

ରସବିନୋଦ, ଭୂତକେଳୀ ଓ ଜଗମୋହନ ଛାନ୍ଦ ପ୍ରଭୃତି ବହୁ ପୁସ୍ତକର ପ୍ରଣେତା କବି କୃଷ୍ଣ ଦାସ 'ଅମୃତ ସାଗର' ଶୀର୍ଷକ ଏକ କୃଷ୍ଣକାବ୍ୟ ପ୍ରଣୟନ କରିଛନ୍ତି । ଉକ୍ତ ପୁସ୍ତକର ତ୍ରୟୋଦଶ ଅଧ୍ୟାୟ ଠାରୁ ଦ୍ୱାବିଂଶ ଅଧ୍ୟାୟ ପର୍ଯ୍ୟନ୍ତ ମୋଟ ଦଶଟି ଅଧ୍ୟାୟରେ କବି 'ଗୀତଗୋବିନ୍ଦ'ର ବିଷୟବସ୍ତୁର ଭାବାନୁବାଦ କରିଛନ୍ତି ।

ଉଦ୍ଧବ ଦାସ ନାମକ ଲୌହକାର ଜାତିର ଜଣେ କବି, ପୂର୍ବୋକ୍ତ ଜଗନ୍ନାଥ ମିଶ୍ରଙ୍କ ଗଦ୍ୟାନୁବାଦ ପାଠ କରି ଗୀତଗୋବିନ୍ଦର ପଦ୍ୟାନୁବାଦ କରିବାରେ ସଫଳ ହୋଇଛନ୍ତି । ସେ ଗୀତଗୋବିନ୍ଦକୁ ଅନୁବାଦ କରିବାର କାରଣ ଦର୍ଶାଇବାକୁ ଯାଇ ଉଲ୍ଲେଖ କରିଛନ୍ତି—

"ଇନ୍ଦିରା ଗୀତ ଯେ ଗୋବିନ୍ଦ । ଦ୍ୱାଦଶ ସର୍ଗ ପରିବନ୍ଧ ।
ସମ୍ପୂର୍ଣ୍ଣ ଗୀତ ଅର୍ଥ ହୋଇ । ମୂର୍ଖ ଉଦ୍ଧବ ଏହା କହି ।
ହାସ୍ୟ ନ କରିବ ପଣ୍ଡିତେ । ଶୁଣିଣ ମୂର୍ଖ ଅର୍ଥ ଗୀତେ ।।
ଏଥକୁ ଭର୍ଜନ ମୁଁ ନୋହି । ଯେଣୁ ଗୁରୁଙ୍କ ଆଜ୍ଞା ପାଇ ।।
ଶ୍ରୀ ଜଗନ୍ନାଥ ମିଶ୍ରେ ଆସି । ସ୍ୱପ୍ନେ ମୋହର ପାଶେ ବସି ।।
ବୋଇଲେ ଶୁଣ ମୋର ପୁତ୍ର । ଜୟଦେବର କର ଅର୍ଥ ।
ମୁଁ ଅର୍ଥ କରିଅଛି ଯାହା । ତୁ ଗୀତ କରି କର ତାହା ।।
ତେଣୁ ମୁଁ ଏଥି ମନ ଦେଲି । ଜୟଦେବର ଅର୍ଥ କଲି ।।

× × ×

ମୋ ଘର ନୁହଇ ଭଜନ । କମାର କୁଳେ ମୋର ଜନ୍ମ ।।"

ତ୍ରିଲୋଚନ ଦାସ ନାମକ ଜଣେ ନାପିତ 'ଭାରତ ବାଣୀ, କଳସା ବାଣୀ, କଉଶିକ, ମୁନିବର ବାଣୀ, ଦେଶୀ ବରାଡ଼ି, ଗୁର୍ଜରୀ, ମାଳବଗଉଡ଼ା, ଭୈରବ, ବସନ୍ତ ଓ ରାମକିରୀ' ଆଦି ରାଗ-ରାଗିଣୀରେ ଗୀତଗୋବିନ୍ଦର ଗୋଟିଏ ପଦ୍ୟାନୁବାଦ କରିଛନ୍ତି—

"ଶ୍ଳୋକ ସମ୍ପୂର୍ଣ୍ଣ ହୋଇଲା ବାଆସ୍ତରି । ଚଉବିଂଶ ଗାଥା ସ୍ତୁତି ଆଦି କରି ।

× × ×

ଗୀତ ପ୍ରବନ୍ଧେ ଭଣିଲ ତ୍ରିଲୋଚନ । ଓଷ କୂଳ ଜାତିରେ ସେବକ ହୀନ ।।
(ଡକ୍ଟର ନଗେନ୍ଦ୍ରନାଥ ପ୍ରଧାନଙ୍କ 'ଓଡ଼ିଆ ସାହିତ୍ୟରେ ଜୟଦେବ',
(ପୃ ୨୦୩-୨୦୪)

'ଗୀତଗୋବିନ୍ଦ'ର ଗଦ୍ୟାନୁବାଦ କରିବାରେ ବହୁ ଅନୁବାଦକ ପ୍ରୟାସ କରିଛନ୍ତି । ସେମାନଙ୍କ ମଧ୍ୟରେ ମାତ୍ର ଜଣେ ଦି'ଜଣ ଅନୁବାଦକ ପୁସ୍ତକ ଶେଷରେ ନିଜ ନାମୋଲ୍ଲେଖ କରିଛନ୍ତି । ସେ ଦୁଇଜଣ ପ୍ରଖ୍ୟାତନାମା ଅନୁବାଦକ ହେଉଛନ୍ତି, ବାସୁଦେବ ମିଶ୍ର ଓ ବାଣୀଭୂଷଣ ଅନନ୍ତ ରଥ । ଦୁଇଜଣଯାକ ଅନୁବାଦକ ପ୍ରାଚୀନ ଓଡ଼ିଆ ଗଦ୍ୟରେ ଅନୁବାଦ କରିଛନ୍ତି । ଭାଷା ଦୃଷ୍ଟିରୁ ବିଚାର କଲେ ବାସୁଦେବ ମିଶ୍ରଙ୍କ 'ବାଳବୋଧିନୀ' ନାମକ ଗଦ୍ୟାନୁବାଦ ପ୍ରାଚୀନତର ବୋଲି ମନେହୁଏ; ତଥାପି ଅନୁବାଦକ ବାଣୀଭୂଷଣଙ୍କ ଭାଷା ଓ ଅନୁବାଦ ଶୈଳୀ ଆଦୌ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ପରବର୍ତ୍ତୀ ନୁହେଁ ।

ରାଜ୍ୟ ସଂଗ୍ରହାଳୟରେ ଦୁଇଟିଯାକ ଅନୁବାଦ ସମ୍ବଳିତ ପାଣ୍ଡୁଲିପି ମଧ୍ୟରୁ ବାସୁଦେବଙ୍କ 'ବାଳବୋଧିନୀ' ପାଣ୍ଡୁଲିପିଟି ସମ୍ପୂର୍ଣ୍ଣ ଓ ବାଣୀଭୂଷଣଙ୍କ ଅନୁବାଦ ନବମ ସର୍ଗ ସୁଦ୍ଧା ରହିଛି ।

'ଗୀତଗୋବିନ୍ଦ ଟୀକା ସାର' ଶୀର୍ଷକ ଆଉ ଖଣ୍ଡିଏ ଗଦ୍ୟାନୁବାଦ ସମ୍ବଳିତ ପୁସ୍ତକ ଆନୁମାନିକ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀରେ କୌଣସି ଏକ ଅନାମଧେୟ କବିଙ୍କ ଦ୍ୱାରା ରଚିତ ହୋଇଥିଲା । 'ଟୀକାସାର' ଶୀର୍ଷକ ଅନୁବାଦଟି ପୂର୍ବୋକ୍ତ ବାସୁଦେବ ଓ ବାଣୀଭୂଷଣଙ୍କ ଗଦ୍ୟାନୁବାଦ ତୁଳନାରେ ଆଦୌ ଅର୍ବାଚୀନ ନୁହେଁ । ଉଦାହରଣ ସ୍ୱରୂପ 'ବାଗ୍‌ଦେବତା-ଚରିତ ଚିତ୍ରିତ-ଚିତ୍ତସଦ୍ମା'ର ଅନୁବାଦ ଏଠାରେ ପ୍ରଦତ୍ତ ହେଲା, —

"ସେ ଯେଉଂ ଜୟଦେବ କବି ଏ ଯେ ଗୀତଗୋବିନ୍ଦ ତାହାତ ସେ ପ୍ରବନ୍ଧଂ କଲେ । ବାଗଦେବତା ଯେ ସରସ୍ୱତୀ ତାହାର ଚରିତ ସେ ଜୟଦେବ କବିର ଲିଖିଲ ଅଛି । ଅଥବା ପଦ୍ମାବତୀ ଯେ ତାହାର ଭାର୍ଯ୍ୟା ତାହାର ଚରଣ ଯେ ପାଦ ଦୁଇ ଚିତ୍ରଣଟି ତାହାର ଆଜ୍ଞା ତେଣେ କରି ଚକ୍ରବର୍ତ୍ତୀ ଅଟଇଂ ଯେବଣ ଜୟଦେବ କବି ସେ ଶ୍ରୀ ବାସୁଦେବର ରତି କେଳି ଯେ ଶୃଙ୍ଗାର କ୍ରୀଡ଼ାର ଚରିତ ତହିଂର କଥା ଯେ ତାହା ପ୍ରବନ୍ଧ କଲେ ।"

( ଟଇଁଚ୍ଛନିଗୀ )

ଏହି ତିନିଗୋଟି ଗଦ୍ୟାନୁବାଦ ବ୍ୟତୀତ ରାଜ୍ୟ ସଂଗ୍ରହାଳୟର ତାଳପତ୍ର ପୋଥି ଭଣ୍ଡାରରେ ତିନି ଖଣ୍ଡି ଭିନ୍ନ ଭିନ୍ନ ଗଦ୍ୟାନୁବାଦ ସଂରକ୍ଷିତ ହୋଇଛି ଭାଷା ଓ ଅନୁବାଦର ଶୈଳୀ ଦୃଷ୍ଟିରୁ କୌଣସିଟି ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ପରବର୍ତ୍ତୀ ନୁହନ୍ତି । କିନ୍ତୁ ସେ ଗୁଡ଼ିକରେ ଅନୁବାଦକଙ୍କର ନାମ ନାହିଁ କିମ୍ବା ଟୀକା ଗୁଡ଼ିକର ମଧ୍ୟ କୌଣସି ନାମ ନାହିଁ ।

ଗୋପୀନାଥ ଧୀର ଜଗଦ୍ଦେବଙ୍କ ଦ୍ୱାରା ‘ସଙ୍ଗୀତ ଗୀତଗୋବିନ୍ଦ’ ଶୀର୍ଷକ ଖଣ୍ଡିଏ ଗୀତଗୋବିନ୍ଦର ଅନୁବାଦ ଦେଖିବାକୁ ମିଳେ । ଖ୍ରୀଷ୍ଟୀୟ ଊନବିଂଶ ଶତାବ୍ଦୀର ରାଜକବି ଗୋପୀନାଥ ଧୀର ଗୀତଗୋବିନ୍ଦର ସରସ ସାବଲୀଳ ପଦାବଳୀକୁ ଆହୁରି ରୋଚକ କରିବା ଲାଗି ‘ସଙ୍ଗୀତ ଗୀତଗୋବିନ୍ଦ’ ରଚନା କରିବା ସଙ୍ଗେ ସଙ୍ଗେ ସ୍ଥଳ-ବିଶେଷରେ ସ୍ୱପ୍ରତିଭା ପ୍ରସୂତ ପଦାବଳୀରେ ପୁସ୍ତକଟିକୁ ମନୋରଞ୍ଜକ କରାଇ ପାରିଛନ୍ତି-

“ଯେବେ ଈଶ୍ୱର ଈଶ୍ୱରୀ ଇଚ୍ଛାବଶେ କରି ମେଘ ଆଚ୍ଛାଦିଲା ବୃନ୍ଦାବନେ,
ବ୍ରଜଭୁବନ ତମାଳ ତରୁରେ ଶ୍ୟାମଳ ଦିଶେ ଦିନ ସନ୍ଧିର ସମାନେ ।
ଚିହ୍ନି ପାଇ ମନେ ବାଧା ନନ୍ଦ ରାଇ ରାଧା ବୋଇଲେ ଏ କୃଷ୍ଣ ନକ୍ତ ଥାଉ
ତୁମ୍ଭେ ସ୍ୱଭାବେ ସେପରି ଦୁହେଁ ଚାଲ ପୁରୀ ଶୁଣି ଶ୍ରୀମତୀ ହରଷ ଗଲୁ ।
ଯେବେ କିଶୋର କିଶୋରୀ ଯାନ୍ତେ ପଥ ଫେରି ନିବିଡ଼ ଯମୁନା ତଟ କୁଞ୍ଜେ
ପାଇ ଏକାନ୍ତ ସେ କାନ୍ତ କାନ୍ତା ସଙ୍ଗେ ରତି ରାଧାମାଧବ କେଳୀରେ ମଜ୍ଜେ” ।

ଖ୍ରୀଷ୍ଟୀୟ ଊନବିଂଶ ଶତାବ୍ଦୀର ପ୍ରସିଦ୍ଧ କବି ଗୌରହରି ପରିଚ୍ଛା ଶ୍ରୀରାଧାକୃଷ୍ଣ ଲୀଳା ସମ୍ବଳିତ ବହୁ ଚୌପଦୀ ଓ ଖଣ୍ଡକାବ୍ୟ ରଚନା କରିବା ସଙ୍ଗେ ସଙ୍ଗେ, ପ୍ରସିଦ୍ଧ ‘ଗୀତଗୋବିନ୍ଦ’ କାବ୍ୟଟିର ପଦ୍ୟାନୁବାଦ କରିଛନ୍ତି । କବିଙ୍କ ଅନୁବାଦ ମଧ୍ୟରୁ ‘ଚନ୍ଦନ ଚର୍ଚ୍ଚିତ ନୀଳକଳେବର’ ଗୀତଟିର ପ୍ରଥମ ପାଦର ଅନୁବାଦ ଏଠାରେ ଉଦ୍ଧୃତ ହେଲା ।

“ବାରେ ଚାହାଁ ହରିଙ୍କି, ଗୋ କିଶୋରି !
ମୁଗ୍ଧ ବଧୂଗଣ ଯେନଣ ଆପଣ,
କ୍ରୀଡ଼ା କରୁଛନ୍ତି ଏହି ବନରେ, ଗୋ କିଶୋରି !
ବାରେ ଚାହାଁ…

ଶ୍ୟାମ ସୁଚିକ୍କଣ ଶ୍ରୀଅଙ୍ଗେ ଚନ୍ଦନ
ଭୂଷଣ ପୀତ ଦୁକୂଳ ବନ ଦାମ,
ହୀରାରେ ଚଞ୍ଚଳ ମକର କୁଣ୍ଡଳ
ଶୋଭି ଗଣ୍ଡସ୍ଥଳ ମନ୍ଦହାସରେ, ଗୋ କିଶୋରି !
ବାରେ ଗୃହାଁ...... ”

ଏତଦ୍‌ବ୍ୟତୀତ ଚଇତନ ଦାସ ଓ ଭିକାରି ଦାସ ନାମକ ଦୁଇଜଣ ଅଖ୍ୟାତ ନାମା କବି 'ଗୀତଗୋବିନ୍ଦ' ଅନ୍ତର୍ଗତ କେବଳ ଦଶାବତାର ସ୍ତୁତିର ଅନୁବାଦ କରିଛନ୍ତି । ପ୍ରସ୍ତୁତ ଆଲୋଚନାରେ ଆଲୋଚିତ କବିମାନଙ୍କ ବ୍ୟତୀତ ଆହୁରି ବହୁ ଓଡ଼ିଆ କବି 'ଗୀତଗୋବିନ୍ଦ'ର ଅନୁବାଦ କରିଥିବା ଆଦୌ ଅସମ୍ଭବ ନୁହେ । ଅବଶ୍ୟ ପିଣ୍ଡିକ ଶ୍ରୀଚନ୍ଦନ ଓ ଶ୍ୟାମସୁନ୍ଦର ଭଞ୍ଜ ପ୍ରଭୃତି ସୁଖ୍ୟାତ ଓଡ଼ିଆ କବିମାନେ, ଗୀତଗୋବିନ୍ଦର ବଙ୍ଗଳାନୁବାଦ କରି ତାତ୍କାଳୀନ ଗୌଡ଼ୀୟ ଭକ୍ତମାନଙ୍କ ମନୋରଞ୍ଜନ କରିଥିଲେ । କାରଣ ଶ୍ରୀଚୈତନ୍ୟ ଦେବଙ୍କ ଓଡ଼ିଶା ଆଗମନ ପର୍ଯ୍ୟନ୍ତ ବଙ୍ଗ ଦେଶରେ 'ଗୀତଗୋବିନ୍ଦ'ର ପ୍ରଚୁର କିମ୍ବା ପ୍ରସାର ହୋଇ ନ ଥିଲା । ଶ୍ରୀଚୈତନ୍ୟ ଦେବ ଓ ତାଙ୍କ ସହିତ ଆସିଥିବା ଗୌଡ଼ୀୟ ଗୋସ୍ୱାମୀମାନେ ଶ୍ରୀକ୍ଷେତ୍ରରେ 'ଗୀତଗୋବିନ୍ଦ' ଶ୍ରବଣ କରି ବିମୁଗ୍‌ଧ ହୋଇ ଯାଇଥିବାର ପ୍ରମାଣ ରହିଛି । *

ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରୁ ଆରମ୍ଭ କରି ଊନବିଂଶ ଶତାବ୍ଦୀ ମଧ୍ୟରେ ବହୁସଂଖ୍ୟକ ସଂସ୍କୃତ ପୁରାଣୋକ୍ତ 'ବ୍ରତକଥା' ଗୁଡ଼ିକ ଓଡ଼ିଆ ଗଦ୍ୟ ଓ ପଦ୍ୟରେ ଅନୁବାଦିତ ହୋଇଛି । ଏଥି ମଧ୍ୟରୁ ପ୍ରାୟ ଅଧିକାଂଶ ଅନୁବାଦକଙ୍କ ନାମ ଜଣାଯାଏ ନାହିଁ । କେବଳ ରାମଦାସ, ଦ୍ୱିଜ ଅନିରୁଦ୍ଧ ଓ କପିଳେଶ ନନ୍ଦଙ୍କ ନାମ ବ୍ରତକଥାର ଭଣିତାରୁ ମିଳିଥାଏ ।

ସେହିପରି ଓଡ଼ିଆ କବି 'କର୍ଣ୍ଣ'ଙ୍କ ଦ୍ୱାରା ରଚିତ ପାଲା ପୁସ୍ତକ ଗୁଡ଼ିକର ଭାଷା ହେଉଛି ବଙ୍ଗଳା; କିନ୍ତୁ ସେ ଗୁଡ଼ିକୁ ଓଡ଼ିଆ ଭାଷାରେ ଅନୁବାଦ କରି ଭୃଗୁରାମ ଓ ଦ୍ୱିଜ ବିଶ୍ୱନାଥ ପ୍ରଭୃତି କେତେଜଣ କବି, ଆମ ରାଜ୍ୟରେ ବ୍ୟାପକ ପ୍ରଚାର କରାଇଥିଲେ ।

---

* 'ଶ୍ରୀ ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ' ଲେଖକ—ଶ୍ରୀ କେଦାରନାଥ ମହାପାତ୍ର ପୃ ୧୪୮
'ଶ୍ରୀ ଗୀତଗୋବିନ୍ଦ' ଲେଖକ—କବିଚନ୍ଦ୍ର ଶ୍ରୀ କାଳୀଚରଣ ପଟ୍ଟନାୟକ ପୃ ୫୦୦-୫୦୨

ସଂସ୍କୃତ ଭାଷାରେ ଲିଖିତ ଖଣ୍ଡିଏ ପ୍ରସିଦ୍ଧ ଚମ୍ପୂକାବ୍ୟ ହେଉଛି— 'ରାମାୟଣ ଚମ୍ପୂ' । ଏହି ଗ୍ରନ୍ଥର ପ୍ରଣେତା ଥିଲେ— ଭୋଜରାଜ ଓ ଲକ୍ଷ୍ମଣ ସୁରି । ଏହି ଚମ୍ପୂକାବ୍ୟଟିର ପ୍ରଚାର ଓ ପ୍ରସାର ଭାରତୀୟ ବିଦ୍ୱନ୍ମଣ୍ଡଳୀରେ ବିଶେଷ ଭାବରେ ହୋଇଥିବାର ଜଣାଯାଏ ।

'ରାମାୟଣ ଚମ୍ପୂ'କୁ ବନମାଳୀ ନାମକ ଶ୍ରୀକ୍ଷେତ୍ରର ଜଣେ କବି ତିନିଶହ ଷାଠିଏଟି ଚଉପଦୀରେ ଅନୁବାଦ କରିଛନ୍ତି । କବି ଚଉପଦୀ ନିୟମରେ ଅନୁବାଦ କରିସାରି, ନିଜ ପିତା ହରିଙ୍କ ନାମରେ ପୁସ୍ତକଟିକୁ ଉତ୍ସର୍ଗ କରିଛନ୍ତି । ସ୍ଥଳବିଶେଷରେ କବିଙ୍କ କବିତା ମଞ୍ଜୁଷା ଅନୁବାଦର ବନ୍ଧନକୁ ଅତିକ୍ରମ କରିଛି । ସେପରି କେତୋଟି ସ୍ଥଳରେ ଚଉପଦୀଗୁଡ଼ିକ ଅତ୍ୟନ୍ତ ହୃଦ୍ୟ ହୋଇପାରିଛି ।

କବି ବନମାଳୀ ଖୋର୍ଦ୍ଧାରାଜା ବୀରକେଶରୀ ଦେବ (୧ମ)ଙ୍କ ତ୍ରୟୋଦଶ ଅଙ୍କ ତଥା ୧୬୭୬ ଶକାବ୍ଦ ଅର୍ଥାତ୍ ଖ୍ରୀ:ଅ: ୧୭୫୪ରେ 'ରାମାୟଣ ଚମ୍ପୂ'ର ଅନୁବାଦ ଶେଷ କରିଛନ୍ତି—

"ଶ୍ରୀ ବୀରକେଶରୀ ଦେବ ଅବନୀ ବିଦିତ ।
ତାଙ୍କ ତ୍ରୟୋଦଂଶ ଅଙ୍କେ ପୂର୍ଣ୍ଣ ହେଲା ଗୀତ ।
ରସ ଋଷି ଋତୁ ଶଶୀ ଶକାବ୍ଦରେ ଜାଣ ।
ଏ ଚରିତ ପୂର୍ଣ୍ଣ ହେଲା ଶୁଣ ବିଚକ୍ଷଣ ହେ ॥"

କବି ବନମାଳୀ ସ୍ୱର୍ଗତଃ ଗୁରୁଦେବ ଶ୍ରୀ ଲକ୍ଷ୍ମଣ ତଳଛୋଙ୍କ ସ୍ୱପ୍ନାଦେଶ ପାଇ 'ରାମାୟଣ ଚମ୍ପୂ'ର ଅନୁବାଦ କରିଥିଲେ—

କୁଶଳେ ଏ ଭୋଜରାଜ ଚମ୍ପୂ ଗୀତ ମୋର ।
ସମ୍ପୂର୍ଣ୍ଣ ହୋଇଲା ଯେଉଁ ବିଭୁ ଶୁଣ ଧୀର ।
ଶୁଲକ୍ଷଣ ଶ୍ରୀଲକ୍ଷ୍ମଣ ତଳଛୋ ସ୍ୱପ୍ନରେ ।
ବୋଇଲେ ଏ ଗୀତ କର ନିର୍ଭୟେ ମନରେ ଯେ ।
ସେହି ଆଜ୍ଞା ମୂଳ କରି କଲି ଚଉପଦୀ ।
ମହତ ଆଜ୍ଞାକୁ ହୃଦ ସମ୍ପୁଟେ ସମ୍ପାଦି ।"

କବି 'ରାମାୟଣ ଚମ୍ପୂ'ର ଶ୍ଳୋକଗୁଡ଼ିକୁ ଅତି ଦକ୍ଷତାର ସହିତ ଓଡ଼ିଆ ପଦ୍ୟରେ ଅନୁବାଦ କରିଛନ୍ତି । ଭାଷାର ଚମତ୍କାରିତା ଦୃଷ୍ଟିରୁ ଏଠାରେ ଗୋଟିଏ ଶ୍ଳୋକର ଅନୁବାଦ ପ୍ରଦତ୍ତ ହେଲା—

ଶ୍ଳୋକ—

"ବାଲ୍ମୀକିଗୀତରଘୁପୁଙ୍ଗବକୀର୍ତ୍ତିଲେଶୈ
ସ୍ତୃପ୍ତିଂ କରୋମି କଥମପ୍ୟଧୁନା ବୁଧାନାମ୍ ॥
ଗଙ୍ଗାଜଳୈ ର୍ଭୁବି ଭଗୀରଥ ଯତ୍ନ-ଲବ୍ଧୈଃ
କିଂ ତର୍ପଣଂ ନ ବିଦଧାତି ନରଃ ପିତୃଣାମ୍ ॥"

ଅନୁବାଦ—

ବିଚାରିଲେ ମନେ ଏ ମର୍ତ୍ତ୍ୟ ଭୁବନେ ଗଙ୍ଗା ଆଣିଲେ ଭଗୀରଥ ।
ତର୍ପଣ ସେ ଜଳେ କେହି କଲେ ହେଲେ ବଂଶ କରନ୍ତି କୃତାର୍ଥ ॥
ସେହିମତ ଋଷି ବାଲମିକ ଭାଷି ଅଛନ୍ତି ଯାହା ସମରେ ।
ସେହି ଅନୁସାରେ ଗ୍ରନ୍ଥ କଲି ଧୀରେ ସୁଖ ଲଭିବ ଏଥିରେ ॥"

ସଂସ୍କୃତ ସାହିତ୍ୟ ଜଗତରେ କାଶ୍ମୀରୀୟ କବି ଅମରୁକଙ୍କ ରଚିତ 'ଅମରୁ-ଶତକ'ର ପ୍ରଚୁର ଯଥେଷ୍ଟ ହୋଇଛି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ସେହି ବିଶ୍ୱପ୍ରସିଦ୍ଧ କାବ୍ୟର ଅନୁବାଦ ଊନବିଂଶ ଶତାବ୍ଦୀର କବି ଶ୍ରୀନିବାସ ରାଜମଣିଙ୍କ ଦ୍ୱାରା ହୋଇଥିଲା । ଶ୍ରୀନିବାସ ରାଜମଣି ଥିଲେ— ଦକ୍ଷିଣ ଓଡ଼ିଶାର ପ୍ରସିଦ୍ଧ ରାଜବଂଶ (ବର୍ତ୍ତମାନ ଆନ୍ଧ୍ରପ୍ରଦେଶର ଅନ୍ତର୍ଗତ) ମଞ୍ଜୁଷାର ରାଜା । ରାଜକବି ଶ୍ରୀନିବାସ ରାଜମଣି 'ମୁକ୍ତା ଲତାବଳୀ' ସମେତ ବହୁ ଗ୍ରନ୍ଥର ଲେଖକ ଓ ଅନୁବାଦକ । ତାଙ୍କ ଦ୍ୱାରା ଅନୂଦିତ 'ଅମରୁଶତକ' ପୁସ୍ତକଟି ଖଣ୍ଡିଏ ଉପାଦେୟ ଅନୁବାଦ ପୁସ୍ତକ । ଅମରୁ ଶତକର ପ୍ରଥମ ଶ୍ଳୋକଟିର ଅନୁବାଦ ଏଠାରେ ପ୍ରଦତ୍ତ ହେଲା—

"ଜୟ ଅମ୍ବିକା ଜଗତ ତାରିଣୀ । କଟାକ୍ଷେ ରକ୍ଷା କର ଠାକୁରାଣୀ ॥
ଯେଉଁ କଟାକ୍ଷ ଚତୁର୍ବର୍ଗ ଦାୟୀ । ବଚନରେ ତାହା ନୋହିଇ କହି ॥
ମନୋହର ଧନୁର୍ଗୁଣ,
ଲଜ୍ଜିତ କରେ କରି ଆକର୍ଷଣ ।

ତର୍ଜନୀ ମଧ୍ୟମା ମଧ୍ୟେ ରାଜିତ । ଅଙ୍ଗୁଷ୍ଠରେ ପୁଙ୍ଖ କରି ପୀଡ଼ିତ ।
ତଳ୍ପରେ ଅନାମିକା ଯୋଗକରି । ନଖ ଅଂଶୁ ହସ୍ତ ପୃଷ୍ଠେ ପ୍ରସରି ।
ଅପାଙ୍ଗେ ହୋଇ ମିଶ୍ରିତ,
ସର୍ବଜନ ସୁଖ କରଇ ଜାତ ॥

ମଞ୍ଜରୀଯୁତ ପଲ୍ଲବ ରୁଚିର । ଅତ୍ୟନ୍ତ ଶୋଭାବନ କର୍ଣ୍ଣପୁର ।
ଲୋଭ ଭ୍ରାନ୍ତିରେ ହୋଇଛି ଚଞ୍ଚଳ । ଭ୍ରମର ଭ୍ରମ ହରଇ ସକଳ ।
ଅର୍ଦ୍ଧଅଙ୍ଗ ସ୍ଥିତ ହର,
ଅଯୋନି ଜାତ ରଚିତ ସଂସାର ॥

ପ୍ରମତ୍ତ ଧ୍ୱାନ କ୍ଳେଶରି ଆସନା । ପ୍ରପନ୍ନ ଜନ ଆନନ୍ଦବର୍ଦ୍ଧନୀ ॥
ଗଣାଧିପ ଷଡ଼ାନନ ଜନନୀ । ଭକ୍ତ ଜନରେ ଅଭୟ-ଦାୟିନୀ ।
ଚରଣ କମଳ ଦୁଇ,
ନୃପ ଶ୍ରୀନିବାସ ନଜେ ଭାବଇ । ”

ଆନୁମାନିକ ଖ୍ରୀଷ୍ଟୀୟ ପଞ୍ଚମ, ଷଷ୍ଠ ଶତାବ୍ଦୀର ଓଡ଼ିଆ ପଣ୍ଡିତ ବିଷ୍ଣୁ ଶର୍ମାଙ୍କ* ବିଶ୍ୱ-ବିଶ୍ରୁତ 'ପଞ୍ଚତନ୍ତ୍ର'ର ଅବଲମ୍ବନରେ ଲିଖିତ 'ହିତୋପଦେଶ' ଶୀର୍ଷକ କଥାକାବ୍ୟ ପୁସ୍ତକଟି ଉତ୍କଳର ଘରେ ଘରେ ସୁପରିଚିତ । 'ହିତୋପଦେଶ'ର ଶିକ୍ଷାମୂଳକ କାହାଣୀ ଗୁଡ଼ିକର ପ୍ରଚାର ଉଦ୍ଦେଶ୍ୟରେ କେତେଜଣ ବିଦ୍ୱାନ୍ ତାହାଁର ଗଦ୍ୟ ଓ ପଦ୍ୟାନୁବାଦ କରିଥିଲେ । ରାଜ୍ୟ ସଂଗ୍ରହାଳୟର ପୋଥି ଭଣ୍ଡାରରେ ସଂରକ୍ଷିତ 'ହିତୋପଦେଶ'ର ଓଡ଼ିଆନୁବାଦ ମଧ୍ୟରେ କବି ଗଙ୍ଗାଧର ମିଶ୍ରଙ୍କ ଦ୍ୱାରା ଲିଖିତ ଖଣ୍ଡିଏ ପଦ୍ୟାନୁବାଦ ରହିଛି । କବି ଗଙ୍ଗାଧର ମିତ୍ରଲାଭ, ସୁହୃଦ୍‌ଭେଦ, ବିଗ୍ରହ ଓ ସନ୍ଧି—ଏହି ଚାରୋଟି ପ୍ରକରଣକୁ ଏଗାର ଶହ ବାସ୍ତୋରି ପଦରେ ଅନୁବାଦ କରିଛନ୍ତି । ଅନ୍ୟ କେତେଖଣ୍ଡି ଓଡ଼ିଆ ଗଦ୍ୟରେ ଅନୁବାଦିତ ହୋଇଛି । ପ୍ରତ୍ୟେକ ଅନୁବାଦର ଭାଷା ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ପରବର୍ତ୍ତୀ ବୋଲି ମନେ ହୁଏନାହିଁ । ଉଦାହରଣ ସ୍ୱରୂପ ହିତୋପଦେଶ (ମିତ୍ରଲାଭ)ର ପ୍ରଥମ ଶ୍ଳୋକର ଅନୁବାଦ ନିମ୍ନରେ ପ୍ରଦତ୍ତ ହେଲା—

---

* Home Land of Viṣṇuśarmā by Dr S.C. Behera, M.A., Ph.D. I. H. Q. Vol. XXXVIII, Nos. 2 & 3.

"ପ୍ରଥମୁ ଶିବଙ୍କୁ ନମସ୍କାର କରି ହିତୋପଦେଶ ସଂସ୍କୃତ ।
ବିରଚିଣ ଗଜପତି ମହେଶ୍ୱର ଭାଷା ପ୍ରବନ୍ଧରେ କଲେ ଗୀତ ।
ଗ୍ରନ୍ଥ ମୂଳେ ବିପ୍ର ନାରାୟଣ କହିଅଛି ମଙ୍ଗଳାଚରଣ ।
ଆଶଂସା ରୂପରେ ନିର୍ବିଘ୍ନେ ଗ୍ରନ୍ଥର ସମାପ୍ତି ନିମିତ୍ତେ ଶୁଣ ।
ଏ ହିତୋପଦେଶ ଶୁଣିଲା ମାତ୍ରକେ ସବୁ ସଂସ୍କୃତ ଜାଣଇ ।
ସର୍ବ ବିଷୟରେ ବଚନ ଚାତୁରୀ ରାଜନୀତି ବିଦ୍ୟା ହୋଇ ।
ଅଜର ଅମର ପ୍ରାୟେ ବୁଦ୍ଧିମନ୍ତ ଧନ ବିଦ୍ୟା ଅରଜିବ ।
ମୃତ୍ୟୁଂ ସର୍ବଦା ମୃତ୍ୟୁଗ୍ରସ୍ତ ବିଚାରି ଧର୍ମାଚରଣ କରିବ ।"

(ହିତୋପଦେଶ, ରାଜ୍ୟ ସଂଗ୍ରହାଳୟ ପୋଥି, O.L./1491)

× × ×

"ଯଉଂ ମହେଶଙ୍କର ଶିରରେ ଗଙ୍ଗାର ଫେନଲେଖା ପରି ହୋଇ ଚନ୍ଦ୍ରକଳା ଶୋଭା ପାଉଅଛି, ସେ ମହେଶଙ୍କ ପ୍ରସାଦନ୍ତୁଂ ସାଧୁଲୋକ ମାନଙ୍କର କାର୍ଯ୍ୟସିଦ୍ଧ ହୋଉ ।" (ମୁଦ୍ରାରାକ୍ଷସ ପୋଥି ସଂଖ୍ୟା Or. Pr. /71)

"ସେ ଯେ ଧୂର୍ଜଟୀ ଯେ ଈଶ୍ୱର ତାହାଙ୍କ ପ୍ରସାଦୁ ଉତ୍ତମ ଲୋକମାନଙ୍କର ସିଦ୍ଧରେ ସିଦ୍ଧ ହୋଇ । ଯେ ଈଶ୍ୱରର ମସ୍ତକେ ଗଙ୍ଗାଫେନ ପ୍ରାୟେ ଚନ୍ଦ୍ରକଳା ଅଛି । ସେ ଈଶ୍ୱର ପ୍ରସାଦୁ କରି ସାଧରେ ସିଦ୍ଧ ହୋଇ" ।

( ମୁଦ୍ରାରାକ୍ଷସ ପୋଥି ସଂଖ୍ୟା O. L. / 382 )

ପ୍ରସିଦ୍ଧ ଗୌଡ଼ୀୟ ଗୋସ୍ୱାମୀ ରୂପଦେବଙ୍କ ବିରଚିତ 'ହଂସଦୂତ' ନାମକ ଖଣ୍ଡକାବ୍ୟ ସଂସ୍କୃତ ସାହିତ୍ୟରେ ଏକ ଅନବଦ୍ୟ ଗ୍ରନ୍ଥ । ଉକ୍ତ ଖଣ୍ଡକାବ୍ୟର ପ୍ରଚାର ଓଡ଼ିଶାରେ ବିଶେଷଭାବରେ ହୋଇଥିବାର ଦେଖାଯାଏ । କାରଣ ପାରଳାଖେମୁଣ୍ଡିର ରାଜା ଗଜପତି ଜଗନ୍ନାଥ ନାରାୟଣ ଦେବଙ୍କ ସଭାକବି କବିରତ୍ନ ପୁରୁଷୋତ୍ତମ ମିଶ୍ର 'ହଂସଦୂତ' ଉପରେ 'ମନୋହାରିଣୀ' ଶୀର୍ଷକ ସର୍ବପ୍ରଥମ ଟୀକା ରଚନା କରିଥିଲେ ।

"ମିଶ୍ରଃ ଶ୍ରୀପୁରୁଷୋତ୍ତମୋ ବିତନୁତେ ଟୀକା ମନୋହାରିଣୀ ।

× × ×

ଟୀକେୟଂ ପ୍ରଥମା ମୟୈବ ରଚିତା, ଶ୍ରୀହଂସଦୂତାଭିଧେ
କାବ୍ୟେ ସା କଲ ଭାବନେନ ନିତରାଂ ଦାର୍ଢ୍ୟାର୍ଥଂ ଲଭ୍ୟତେ ।
ତସ୍ୟୈବ ପ୍ରତିପତ୍ତୟେ ପୁନରପି ପ୍ରାରଭ୍ୟତେ ସା କୃତି-
ର୍ଯାତେ ତତ୍ର ପ୍ରଣତୋଽହ ଶୁଦ୍ଧବୁଦ୍ଧୟୋ

ସନ୍ତୋଽନୁଗୃହ୍ଣନ୍ତୁ ମାମ୍" ।

ଉକ୍ତ 'ହଂସଦୂତ' ଖଣ୍ଡକାବ୍ୟର ଏକାଧିକ ଟୀକା ରାଜ୍ୟ ସଂଗ୍ରହାଳୟର ପୋଥି ଭଣ୍ଡାରରେ ସଂରକ୍ଷିତ ହୋଇଛି । ତନ୍ମଧ୍ୟରେ ଖଣ୍ଡିଏ ପଦ୍ୟାନୁବାଦର କବି ହେଉଛନ୍ତି— ବୈଶ୍ୟ ହରି । ଖୁବ୍ ସମ୍ଭବତଃ ବୈଶ୍ୟ ହରି ହେଉଛନ୍ତି—ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର କବି ଏବଂ 'ସୂତହ ରାମାୟଣ' ନାମକ ରାମ କାବ୍ୟରେ ଉକ୍ତିତ 'ହରି'ଙ୍କ ସହିତ 'ହଂସଦୂତ'ର ଅନୁବାଦକ ବୈଶ୍ୟ ହରିଙ୍କୁ ଚିହ୍ନିତ କରାଯାଇ ପାରେ । ଏହାଙ୍କ ରଚିତ 'ଦଧିମନ୍ଥନ ନାବକେଳୀ' ଶୀର୍ଷକ ଅନ୍ୟ ଏକ ପୁସ୍ତକ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇଛି । କବି ବୈଶ୍ୟ ହରିଙ୍କ ଅନୁବାଦରୁ କେତେକାଂଶ ଏଠାରେ ପ୍ରଦତ୍ତ ହେଲା—

"ଦୁକୂଳଂ ବିଭ୍ରାଣୋ ଦଳିତ-ହରିତାଳଦ୍ୟୁତିହରଂ
ଜବାପୁଷ୍ପଶ୍ରେଣୀ ରୁଚିରୁଚିରପାଦାମ୍ବୁଜତଳଃ ।
ତମାଳଶ୍ୟାମାଙ୍ଗୋ ଦରହସିତଲୀଳାଞ୍ଚିତମୁଖଃ
ପରାନନ୍ଦାଭୋଗଃ ସ୍ଫୁରତୁ ହୃଦି ମେ କୋଽପି ପୁରୁଷଃ ।"

ଅନୁବାଦ—

"ଦଳିତ ହରିତାଳ ଦ୍ୟୁତିହର ସୁଚେଳ ଯାର କଟିରେ ପରିଧାନ
ଜବା କୁସୁମଶ୍ରେଣୀ ରୁଚି ରୁଚିର ଜିଣି ଯା ପାଦତଳ ଶୋଭାବାନ

ହେ ସୁଜ୍ଞଜନେ;

ତମାଳ ଶ୍ୟାମବର୍ଣ୍ଣ ଯାର,
ଯେ ପୂର୍ଣ୍ଣ ଆନନ୍ଦ ଆକାର,

ଦରହାସେ ସୁନ୍ଦର ମୁଖ ଯାର ସେ ମୋର ହୃଦେ ସ୍ଫୁରନ୍ତୁ ନିରନ୍ତର ହେ ।

ଶେଷ ଶ୍ଳୋକର ଅନୁବାଦ—

ଶ୍ରୀହରି ଆମ୍ଭ ପ୍ରତି ସଦୟ ଥିଲେ ନିତି କୁଞ୍ଜପୁଞ୍ଜ ନାନା ରୂପରେ
ଆନନ୍ଦ ଉତ୍ପାଦନ ଚିତ୍ତ ରଞ୍ଜିତ କରି ବିନୋଦକର ଆନନ୍ଦରେ

ହେ ଯଦୁମଣି,
ଆମ୍ଭଙ୍କୁ ଏବେ କଷ୍ଟ ଦେଇ
ଦୁର୍ଭାଗ୍ୟ ଉଦୟ ଯେ ହୋଇ
କହଇ **ବୈଶ୍ୟ ହରି** ଶ୍ରୀକୃଷ୍ଣଙ୍କୁ ସ୍ମରି କରି ଏବେ ଯେ ଅନୁକୂଳ
ହେ ଯଦୁମଣି ॥"

ସଂସ୍କୃତ ସାହିତ୍ୟରେ 'ହନୁମନ୍ନାଟକ'ର ପ୍ରସିଦ୍ଧି ଖୁବ୍ ରହିଛି । ଏହି ନାଟକଟିର ପ୍ରଚାର ଓଡ଼ିଆରେ ଖୁବ୍ ହୋଇଥିବାର ଜଣାଯାଏ । ଆନୁମାନିକ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର କବି କିଶୋରୀ ଚରଣ ଦାସ 'ହନୁମନ୍ନାଟକର' ଅନୁବାଦ କରିଛନ୍ତି । ଏହି ଅନୁବାଦର ଏକ ଅସମ୍ପୂର୍ଣ୍ଣ ନକଲ ରାଜ୍ୟ ସଂଗ୍ରହାଳୟର ପୋଥି-ଭଣ୍ଡାରରେ ସଂରକ୍ଷିତ ହୋଇଛି । ଅନୁବାଦକ କିଶୋରୀଚରଣ ସରଳ ତଥା ସାବଲୀଳ ଭାଷାରେ ଏହାର ଅନୁବାଦ କରିଛନ୍ତି ।

"ରେ ରେ ରାବଣ ...... ମୃତ୍ୟୁ ପ୍ରିୟମ୍"

"ଏସନ ବାକ୍ୟମାନ ଶୁଣି । କହଇ କପିକୁଳ-ମଣି ॥
ରେ ରେ ରାବଣ ମୂର୍ଖ ଦୈତ୍ୟ । କି ହେବ ମୋତେ ଶସ୍ତ୍ରାଘାତ ॥
ମୋହୋର ମୃତ୍ୟୁଭେଦ ଯେତେ । କହୁଛି ଶୁଣ ତୁ ଶ୍ରବଣେ ॥
ଏଥକୁ ସାବଧାନ କରି । ହେଶେଷେ ଲାଙ୍ଗୁଡ଼ ମୋ ସାରି ॥
ତହିଁ ଗୁଡ଼ିଆଅ ବସନ । ତଇଳ କରାଅ ସେଚନ ॥
ତହିଁ ଲଗାଅ ବୈଶ୍ୱାନର । ତେବେ ମୃତ୍ୟୁ ହେବ ମୋହର ॥"
(ମ୍ୟୁଜିଅମ୍ ପୋଥି—L/439)

ଏତଦ୍‌ବ୍ୟତୀତ ଖ୍ରୀଷ୍ଟୀୟ ସପ୍ତଦଶ, ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ବହୁ ସଂସ୍କୃତ ଗ୍ରନ୍ଥ ଓଡ଼ିଆ ଭାଷାରେ ଅନୁବାଦିତ ହୋଇଥିଲା । ସେଗୁଡ଼ିକ ମଧ୍ୟରେ ମେଘଦୂତ, କୁମାର ସମ୍ଭବ, ଋତୁସଂହାର, ସପ୍ତଶତୀ ଚଣ୍ଡୀ, ବେତାଳ ପଞ୍ଚବିଂଶତି, ଦ୍ୱାତ୍ରିଂଶ ପୁତ୍ତଳିକା, ଶୁକସପ୍ତତି, ନୈଷଧୀୟ ଚରିତ ଓ କାଦମ୍ବରୀ ଆଦିର ନାମ ଉଲ୍ଲେଖଯୋଗ୍ୟ । ପ୍ରସ୍ତୁତ ଆଲୋଚନାର ସୀମିତ ପରିସର ମଧ୍ୟରେ ଅଧିକ ସମ୍ଭବ ନୁହେଁ ।

ସଂସ୍କୃତ ବ୍ୟତୀତ ପ୍ରାଚୀନ ହିନ୍ଦୀ', ସାହିତ୍ୟର ବଶିଷ୍ଟ ଗ୍ରନ୍ଥ 'ରାମ ଚରିତ ମାନସ'ର ଓଡ଼ିଆ ଅନୁବାଦ ଗତ ଶତାବ୍ଦୀରେ ହୋଇଥିବାର ଜଣାଯାଏ ।

ରାଜ୍ୟ ସଂଗ୍ରହାଳୟର ପୋଥିଭଣ୍ଡାରରେ ସଂରକ୍ଷିତ 'ରାମଚରିତ ମାନସ'ର ଅନୁବାଦରୁ ଜଣାଯାଏ ଯେ, ବୈଷ୍ଣବ ମଧୁସୂଦନ ଦାସ ପୁରୀ ଜିଲ୍ଲାର କଣ୍ଟିଲୋ ନିବାସୀ ସିଦ୍ଧ ମିଶ୍ରଙ୍କ ସାହାଯ୍ୟରେ ସ୍ନ ୧୨୮୩ ସାଲ ଅର୍ଥାତ୍ ଖ୍ରୀ: ଅ: ୧୮୭୬ରେ ଉତ୍ତର କାଣ୍ଡର ଅନୁବାଦ ଶେଷ କରିଥିଲେ ।

"ଦିଲ୍ଲୀ ବାଦଶା ସନ ବାରଶ ତେୟାଶୀ<br>
ରାଜେ ଦିବ୍ୟସିଂହ ଦେବ ଅଙ୍କ ଛକୋଇଶୀ ।।<br>
କାର୍ତ୍ତିକ ଶୁକ୍ଳ ଚନ୍ଦ୍ରଦିନ କୃଷ୍ଣପକ୍ଷ ହୋଇ ।<br>
ସପତମୀ ଗୁରୁବାର ବଦିତ ଅଟଇ ।।<br>
ଏ ଦିନ ବେଳ ମଧ୍ୟାହ୍ନ ସମୟରେ ଜାଣ ।<br>
ସମ୍ପୂର୍ଣ୍ଣ ହୋଇଲେ ଏ ତୁଳସୀ ରାମାୟଣ ।।<br>
ଓଡ଼ିଶା ଦେଶ ଭାଷାରେ ସମ୍ପୂର୍ଣ୍ଣ ହୋଇଲେ ।<br>
ପୂର୍ବେ ହିନ୍ଦୁସ୍ଥାନୀ ଭାଷାରେ ଯେ ଏହୁ ଥିଲେ ।।"

ଅନୁବାଦ ପୁସ୍ତକର ପୁଷ୍ପିକାରୁ ଜଣାଯାଏ ଯେ, ଅଯୋଧ୍ୟା କାଣ୍ଡର ଅନୁବାଦ ସ୍ନ ୧୨୭୨ ଓ କିଷ୍କିନ୍ଧାକାଣ୍ଡର ଅନୁବାଦ ସ୍ନ ୧୨୭୭ ସାଲରେ ହୋଇଥିଲା । ସେଥିରୁ ଅନୁମାନ କରାଯାଇ ପାରେ ଯେ, ସ୍ନ ୧୨୭୦ରେ କବି ମଧୁସୂଦନ ବାଳକାଣ୍ଡର ଅନୁବାଦ ଆରମ୍ଭ କରିଥିଲେ ।

କବି ଅନୂଦିତ କାଣ୍ଡଗୁଡ଼ିକର ସ୍ଥଳବିଶେଷରେ ନିଜ ସମ୍ବନ୍ଧରେ ପ୍ରାପ୍ତ ସମସ୍ତ ପରିଚୟ ଦେଇଛନ୍ତି । ଆଗ୍ରହୀ ପାଠକ ତଥା ଜିଜ୍ଞାସୁ ସମାଲୋଚକଙ୍କ କୌତୂହଳର ଉପଶମ ନିମିତ୍ତ ସଂକ୍ଷେପରେ କେତୋଟି ଉଦ୍ଧୃତ ଏଠାରେ ପ୍ରଦତ୍ତ ହେଲା —

"ଶ୍ରୀଗୁରୁ ଆଶ୍ରମ ପୁରୁଷୋତ୍ତମ କ୍ଷେତ୍ରେଣ ।<br>
ସିଂହଦ୍ୱାରେ ବଉଳଛତା ନାମ ଖ୍ୟାତ ପୁଣ ।<br>
ଶ୍ରୀ ପ୍ରେମ ଦାସଙ୍କ ଶିଷ୍ୟ ଲଛମନ ଜାଣ ।<br>
ଶ୍ରୀଗୁରୁ ମୋହର ଆହେ ସାଧୁମାନେ ଶୁଣ ।।"

× × ×

ଏହ୍ବୁପର ଶ୍ରୀ ନୀଳମାଧବ କ୍ଷେତ୍ରେ ଆସି ।
ରହିଲ ଅନୁସରଣେ ହୋଇଣ ନିବାସୀ ॥

× × ×

ଶ୍ରୀପ୍ରଭୁଙ୍କ କୃତ ପିତା-ମାତା ବାତ୍ସଲ୍ୟରେ ।
ଦ୍ରବ ହୋଇଗଲ ରହି କଣ୍ଟିଲୋ ଗ୍ରାମରେ ॥
ବର୍ଣ୍ଣରେ ବଣିକ ନାମ ପୁରୁଷୋତ୍ତମ ତାର ।
ପତ୍ନୀ ଯଶୋମତୀ ସଙ୍ଗ ଧର୍ମେ ଆଗୁଁ ସାର ॥

× × ×

ଦ୍ୱିଜବର ନାମେଣ ପିଣ୍ଡିକ ମିଶ୍ର ଜାଣ ।
ପୁତ୍ର ସିଦ୍ଧ ମିଶ୍ର ତାହାଙ୍କର ପରମାଣ ॥
କଲୁଁ ବେଦଜନେ ଗ୍ରନ୍ଥ ଅନ୍ତ ଭବ ବନ୍ଧ ॥

× × ×

ଶ୍ରୀ ନୀଳମାଧବ ଅନୁକମ୍ପାରୁ କରଣ ।
ପୂର୍ଣ୍ଣ ହେଲେ ତୁଳସୀ ଯେ କୃତ ରାମାୟଣ ॥
ଶ୍ରୀ ତୁଳସୀ ଦାସଙ୍କର କୃପାରୁ କହଣ ।
ସୁନ୍ଦର ପ୍ରାକୃତ ବନ୍ଧେ ପଦ ହୃଦୟର ॥
କହେ ଶ୍ରୀ ବୈଷ୍ଣବ ଦାସ ଯେ ମଧୁସୂଦନ ।
ହରିଭକ୍ତଙ୍କ ଚରଣେ ମୋ ଅନୁସରଣ ॥

× × ×

ହୋଇଲେ ତୁଳସୀ ଦାସ ଗ୍ରନ୍ଥ ଓଡ଼ିଆରେ ।
ବ୍ରହ୍ମାନନ୍ଦ ଧାମ ନୀଳମାଧବ ଛାମୁରେ ॥"

କବି ଶ୍ରୀ ମଧୁସୂଦନ 'ତୁଳସୀ ରାମାୟଣ' ଗ୍ରନ୍ଥଟିକୁ ପ୍ରାଞ୍ଜଳ ଓଡ଼ିଆ ଭାଷାରେ ଅନୁବାଦ, କରି ଓଡ଼ିଆ ପାଠକ ଓ ସମାଲୋଚକ ମାନଙ୍କର ଅଶେଷ ଶ୍ରଦ୍ଧାଭାଜନ ହୋଇଛନ୍ତି । ମଧୁସୂଦନଙ୍କ ଅନୁବାଦ କୁଶଳତାର ପ୍ରମାଣ ସ୍ୱରୂପ, ମୂଳଲେଖା ସମେତ ଦୁଇଟି ଅନୁବାଦିତ ପଦ୍ୟାଂଶ ଏଠାରେ ପ୍ରଦତ୍ତ ହେଲା—

ମୂଳଲେଖା—"ଶ୍ରୀଗୁରୁ ଚରଣ ସରୋଜ ରଜ ନିଜ ମନୁ ମୁକୁର ସୁଧାରି ।
ବରନଉଁ ରଘୁବର ବିମଲ ଯଶୁ ଜୋ ଦାୟକୁ ଫଲଚାରି ।"

ଅନୁବାଦ—"ବନ୍ଦୁ ଶ୍ରୀଗୁରୁ ଚରଣ ସରୋଜ ସୁଗଳ,
ଯାହାଙ୍କ ରଜ ସ୍ମରଣେ ନାଶେ ମନ ମଳ ।
ଶ୍ରୀ ରଘୁନନ୍ଦନଙ୍କର ବିମଳ ଯଶକୁ
ଚିନ୍ତା କଲେ ସେ ଦିଅନ୍ତି ଚତୁରବର୍ଗକୁ ।"

ମୂଳଲେଖା—"ଜବତେଁ ରାମ ବ୍ୟାହି ଘର ଆୟେ,
ନିତ ନବ ମଂଗଲ ମୋଦ ବଧାୟେ ।
ଭୁବନ ଚାରି ଦଶ ଭୂଧର ଭାରୀ,
ସୁକୃତ ମେଘ ବରଷହିଁ ସୁଖ ବାରି ।"

ଅନୁବାଦ—"ବିଭାବିଧି ସାରି ରାମ ଗୃହକୁ ଆଇଲେ ।
ନୂତନ ଶୁଭମାନଙ୍କୁ ଆନନ୍ଦେ ସେ କଲେ ।
ଚତୁର୍ଦ୍ଦଶ-ଭୁବନ ମଧ୍ୟରେ ଭୂମି ଭାରି ।
ଯେ ସୁକୃତ ମେଘ ବୃଷ୍ଟି କରେ ସୁଖବାରି ।"

ମତଶେଷରେ ଏତିକି କୁହାଯାଇ ପାରେ ଯେ; ଓଡ଼ିଆ ଅନୁବାଦ ସାହିତ୍ୟ, ମୌଳିକ ରଚନା ପରି ଅତ୍ୟନ୍ତ ସମୃଦ୍ଧ ଏବଂ ଭାଷା ଓ ସାହିତ୍ୟର ଶ୍ରୀବୃଦ୍ଧି ଉଦ୍ଦେଶ୍ୟରେ ବହୁ କୃତବିଦ୍ୟ ବିଦ୍ୱାନ୍ ଅନୁବାଦ ମାଧ୍ୟମରେ ଦେଶବାସୀଙ୍କର ପରମ କଲ୍ୟାଣ ସାଧନ କରିଛନ୍ତି ।

## ଆଧୁନିକ ଓଡ଼ିଆ ସାହିତ୍ୟର ପୃଷ୍ଠଭୂମି :

ଆଧୁନିକ ଓଡ଼ିଆ ସାହିତ୍ୟ କହିଲେ ସାଧାରଣତଃ ଊନବିଂଶ ଶତାବ୍ଦୀରେ ଲିଖିତ ତଥା ପ୍ରଚଳିତ ଓଡ଼ିଆ ସାହିତ୍ୟକୁ ବୁଝାଯାଏ । କିନ୍ତୁ ଊନବିଂଶ ଶତାବ୍ଦୀର ପ୍ରଥମ ଚରଣରେ ଓଡ଼ିଶା ଇଂରେଜମାନଙ୍କ ଦ୍ୱାରା ଅଧିକୃତ ହେବା ପୂର୍ବରୁ, ଉତ୍କଳରେ ରାଜନୈତିକ ତଥା ଅର୍ଥନୈତିକ ଅସ୍ଥିରତାର ସୁସ୍ପଷ୍ଟ ସୂଚନା ମିଳିବା ସଙ୍ଗେ ସଙ୍ଗେ ସାହିତ୍ୟିକ ମୂଲ୍ୟବୋଧରେ ମଧ୍ୟ ବିଶେଷ ତାରତମ୍ୟ ପରିଲକ୍ଷିତ ହୋଇଥିଲା । କାରଣ ରାଜନୈତିକ ଓ ଅର୍ଥନୈତିକ ଅସ୍ଥିରତାରେ ପ୍ରପୀଡ଼ିତ ଏକ ଜାତିର ସାମାଜିକ

ସ୍ଥିରତା ବା ଆସିବ କାହୁଁ ? ତେଣୁ ସେତେବେଳେ ଲୋକମାନେ ସାହିତ୍ୟକୁ ପ୍ରଗତି-ଶୀଳ ଜୀବନର ନିର୍ଦ୍ଦେଶକ ବୋଲି ନ ଭାବି, କେବଳ ଏକ ବିଳାସୀ ଜୀବନର ଆମୋଦ ଗୀତି ରୂପେ ଗ୍ରହଣ କରୁଥିଲେ । ରାଧାକୃଷ୍ଣ ଭକ୍ତି ମାଧ୍ୟମରେ ଚଳିଆସିଥିବା ଉଚ୍ଛୃଙ୍ଖଳ ପ୍ରେମ ସାହିତ୍ୟକୁ କବିମାନେ ପୃଷ୍ଠପୋଷକମାନଙ୍କ କାମବିଳାସର ଚରିତାର୍ଥ ଲାଗି ଦରବାରୀ ସାହିତ୍ୟ ସୃଷ୍ଟି କରି ସମାଜରେ ପ୍ରଚାର କରିଥିଲେ ଏବଂ ସାଧାରଣ ଜନତା ମଧ୍ୟ ରାଜସଭାରେ ପ୍ରଚଳିତ ସାହିତ୍ୟର ଅଖଣ୍ଡ ଧାରାକୁ ଆଗ୍ରହର ସହିତ ଗ୍ରହଣ କରି ନିଜର କାବ୍ୟ ପିପାସା ମେଣ୍ଟାଉଥିଲେ ।

ଏହା କହିବା ଅର୍ଥ ନୁହେଁ ଯେ, ସେ ସମୟରେ ସୁସାହିତ୍ୟ ପଦବାଚ୍ୟ ହେବାଭଳି ରଚନା କୌଣସି କବିଙ୍କ ଲେଖନୀରୁ ନିଃସୃତ ହୋଇ ନ ଥିଲା । କିନ୍ତୁ ଯେଉଁ କେତେଖଣ୍ଡି ରଚନା ସେତେବେଳେ ସାହିତ୍ୟର ଶୃଙ୍ଖଳା ରକ୍ଷାକରି ଜନ-ଜୀବନକୁ ଶୃଙ୍ଖଳିତ କରିବା ଉଦ୍ଦେଶ୍ୟରେ ରଚିତ ହୋଇଥିଲା, ତାହା ଦରବାରୀ ସାହିତ୍ୟର ପ୍ରବଳ ସ୍ରୋତରେ ବହିଯାଇ ନିଜର ସାହିତ୍ୟିକ ମର୍ଯ୍ୟାଦା ହରାଇ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଉତ୍କଳର ସେହି ରାଜନୈତିକ ଅସ୍ଥିରତାର ସୁଯୋଗ ନେଇ ଇଂରେଜ ମାନଙ୍କର ଆଗମନ ଏକ ଅପ୍ରତ୍ୟାଶିତ ଘଟଣା ବୋଲି କହିହେବ ନାହିଁ; ବରଂ ତାହାକୁ ଏକ ସ୍ୱାଭାବିକ ଘଟଣା ବୋଲି କହିବା ଅଧିକ ସମୀଚୀନ । ବଣିକ୍‌ବୃତ୍ତି କରି ଭାରତରେ ରାଜସଭା ଅଧିକାର କରିଥିବା ଗୋଟିଏ ଜାତି ପକ୍ଷରେ ତାହା ଏକ ପରମ ସୌଭାଗ୍ୟର ସମୟ ବୋଲି କୁହାଯାଇ ପାରେ । କିନ୍ତୁ ଇଂରେଜମାନେ ଏ ଦେଶକୁ ଯେତେ ସହଜରେ ଅଧିକାର କରିବାର ଆଶା ପୋଷଣ କରିଥିଲେ ତାହା ସେତେ ସହଜ ହୋଇ ନ ଥିଲା । ଇଂରେଜମାନେ ବମ୍ବେକୁ ଯୌତୁକ ସ୍ୱରୂପରେ, ବଙ୍ଗଳାକୁ ବିଶ୍ୱାସଘାତକତା ସୂତ୍ରରେ ଅଧିକାର କରି ସହଜରେ ଏ ଦେଶକୁ ଅଧିକାର କରିବା ସଙ୍ଗେ ସଙ୍ଗେ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ପ୍ରବର୍ତ୍ତିତ ମେରାଗପୃ ଓ କୁଟିଳ ଶାସନ ନୀତି ଓଡ଼ିଆମାନଙ୍କ ଉପରେ ଲଦି ଦେଇ ସଙ୍ଗୀନ ମୂନରେ ରାଜ୍ୟ ଶାସନକୁ ଅଧିକ ସୁଗମ କରାଇ ପାରିବେ ବୋଲି ଭାବିଥିଲେ । ଯଦି ସେମାନେ ସାମାଜିକ ବିପର୍ଯ୍ୟସ୍ତ ଏକ ଜାତିକୁ ପ୍ରଥମେ ସାମାଜିକ ସ୍ଥିରତା ଆଣିବାରେ ସୁଯୋଗ ଦେଇ, ତା'ପରେ ସେମାନଙ୍କ କୂଟନୀତିର ପ୍ରୟୋଗରେ ଶାସନଗତ ସ୍ଥିରତା ଆଣିବାରେ ଚେଷ୍ଟା କରିଥାନ୍ତେ; ତାହାହେଲେ ଇଂରେଜ ଶାସନର ପ୍ରାକ୍‌କାଳରେ ଯେଉଁ ଜନ ବିଦ୍ରୋହ ସୃଷ୍ଟି ହୋଇ ଓଡ଼ିଶାର ସର୍ବବିଧ ଉନ୍ନତି ମୂଳରେ

ଲୁଟାତରାଜ କଲା, ତାହା ସମ୍ଭବ ହୋଇ ନ ଥାନ୍ତା । ଏ ସମ୍ବନ୍ଧରେ ଆଲୋଚନା କରି ଆଲୋଚକ ଅଧ୍ୟାପକ ଡ଼କ୍ଟର ନଟବର ସାମନ୍ତରାୟ ଲେଖିଛନ୍ତି— "୧୮୧୭ ସାଲର ପାଇକ ବିଦ୍ରୋହ ଓଡ଼ିଶା ପକ୍ଷରେ ଏକ ଅବିସ୍ମରଣୀୟ ଘଟଣା; ଏହା ମଧ୍ୟ ବ୍ରିଟିଶ ଅପସାରଣର ଏକ ସମୁଜ୍ଜ୍ୱଳ ଚିତ୍ରପଟ । ଦେଶ ଅଧିକାରର ୧୦ଟା ବର୍ଷ ଭିତରେ ଏ ଦେଶ ଲୋକଙ୍କ ସାମାଜିକ ଓ ଅର୍ଥନୈତିକ ଜୀବନଧାରାର ପ୍ରତ୍ୟେକ ବିଭାଗ ଉପରେ ବ୍ୟାପକ ଭାବରେ ବିପନ୍ନ ହୋଇପଡ଼ିଥିଲା, ତାର ଦୟନୀୟ ଆଲେଖ୍ୟ ଏହି ପାଇକ ବିଦ୍ରୋହ ବେଳେ ଲୋକଲୋଚନକୁ ଆସିବାର ସୁବିଧା ପାଇଥିଲା । ଫଳତଃ ପାଇକ ବିଦ୍ରୋହ ହେଉଛି, ବିଦେଶୀ ଅପଶାସନ ବିରୁଦ୍ଧରେ ଏକ ତୀବ୍ରତର ବିକ୍ଷୋଭ ବା ପ୍ରତିକ୍ରିୟା ବ୍ୟତୀତ ଅନ୍ୟ କିଛି ନୁହେଁ । ଏ ପ୍ରତିକ୍ରିୟା ଧନୀ, ନିର୍ଦ୍ଧନ ସବୁଶ୍ରେଣୀର ଲୋକଙ୍କ ଠାରେ ପରିଦୃଷ୍ଟ ହୋଇଥିଲା ।"*

ସମାଲୋଚକ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ମଧ୍ୟ 'ପାଇକ ବିଦ୍ରୋହ'ର କାରଣ ସମ୍ପର୍କରେ ଆଲୋଚନା କରିବାକୁ ଯାଇ ଓଡ଼ିଆମାନଙ୍କ ପ୍ରତି ଇଂରେଜମାନଙ୍କ ପକ୍ଷପାତ ନୀତି ଓ ଓଡ଼ିଶାର ଶାସନ କ୍ଷେତ୍ରରେ ଅଧିଷ୍ଠିତ ବଙ୍ଗୀୟ କର୍ମଚାରୀମାନଙ୍କ ଦୁର୍ନୀତି ହିଁ ଏହି ବିଦ୍ରୋହର ଏକମାତ୍ର କାରଣ ବୋଲି ଦର୍ଶାଇଛନ୍ତି । ★

ଇଂରେଜ ଶାସନାଧୀନରେ ଓଡ଼ିଶାର ଜନଜୀବନରେ ଆଉ ଏକ ବିପର୍ଯ୍ୟୟର କାରଣ ହେଉଛି, ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଗଡ଼ଜାତଗୁଡ଼ିକ ସେତେବେଳେ ଭିନ୍ନ ଭିନ୍ନ ପଡ଼ୋଶୀ ପ୍ରଦେଶରେ ରହିଥିଲା । ସେଠାକାର ଅଧିବାସୀ ଖାଣ୍ଟି ଓଡ଼ିଆ ଭାଷାଭାଷୀ ହୋଇଥିଲେହେଁ ସେମାନଙ୍କୁ ବାଧ୍ୟବାଧ୍ୟକତାର ସହିତ ପଡ଼ୋଶୀ ହିନ୍ଦି, ବଙ୍ଗଳା ଓ ତେଲୁଗୁ ଭାଷାଭାଷୀ ଅଞ୍ଚଳରେ ରଖାଯାଇ; ସେମାନଙ୍କ ଉପରେ ସେଠାକାର ଭାଷା ଓ ସଂସ୍କୃତି ଲଦି ଦିଆଯାଇଥିଲା । ଗଡ଼ଜାତ ଅଞ୍ଚଳର ସେହି ଦୁର୍ଦ୍ଦଶାଗ୍ରସ୍ତ ଓଡ଼ିଆମାନଙ୍କୁ ବହୁଦିନ ପର୍ଯ୍ୟନ୍ତ ସେମାନଙ୍କ ଭାଗ୍ୟକୁ ଆଦର ଭାଷା ଓ ସାଂସ୍କୃତିକ ସ୍ୱାଧୀନତାରୁ ବଞ୍ଚିତ କରାଯାଇ, ସ୍ୱାଧୀନ ଭାରତର ଲୌହମାନବ ସ୍ୱର୍ଗତଃ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ପ୍ରଚେଷ୍ଟାରେ ଗଡ଼ଜାତ ମିଶ୍ରଣ ପର୍ଯ୍ୟନ୍ତ, (୧ । ୧ । ୧୯୪୮)

---

* ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩—୧୯୨୦) ପୃ ୧୦–୧୧

★ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଇତିହାସ ପୃ ୧୨୫-୧୨୯

ଗୋଠଖଣ୍ଡିଆ କରି ରଖାଯାଇଥିଲା । ସମାଲୋଚକ ଉକ୍ତ ସାମନ୍ତରାଜ୍ୟ ଏହି ଅବସ୍ଥାର ସମାଲୋଚନା କରି ଲେଖିଛନ୍ତି—

"ଏମିତି ଆଲୋଚନା କଲେ ଆମେ ଦେଖିପାରିବୁ ଯେ, ଓଡ଼ିଶାର ଗଡ଼ଜାତ ଗୁଡ଼ିକ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ପ୍ରଦେଶର ଅନ୍ତର୍ଭୁକ୍ତ ହୋଇଛନ୍ତି । ଓଡ଼ିଶା ଯେପରି ବିଭିନ୍ନ ସମୟରେ ପଣ୍ୟଦ୍ରବ୍ୟ ପରି ହସ୍ତାନ୍ତରିତ ହୋଇଥିଲା ତା'ର ଗଡ଼ଜାତ ଗୁଡ଼ିକ ସେହି ଦଶା ଭୋଗକରି ଏକ ଶାସନାଧୀନରେ ରହିବାର ସୌଭାଗ୍ୟରୁ ବଞ୍ଚିତ ହୋଇଥିଲେ ।"

ସେତେବେଳେ ଓଡ଼ିଆ ଓ ଓଡ଼ିଆ ଭାଷାର ଭାଗ୍ୟ ପଡ଼ୋଶୀ ରାଜ୍ୟର ଅଧିବାସୀ ଓ ଭାଷା ସହିତ ସମ୍ମିଳିତ ହୋଇଥିଲେହେଁ ଦେଶପ୍ରାଣ ଓଡ଼ିଆମାନଙ୍କ ପକ୍ଷରୁ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷା ଓ ସଂସ୍କୃତିର ସୁରକ୍ଷା ନିମିତ୍ତ ଅନେକ ଯତ୍ନ କରାଯାଇଥିଲା; ମାତ୍ର ପଡ଼ୋଶୀ ପ୍ରଦେଶର ଅବିରତ ପ୍ରଚେଷ୍ଟା ତଥା ଶାସକଗୋଷ୍ଠୀର ଅବହେଳା ଫଳରେ ଧୀରେ ଧୀରେ ଓଡ଼ିଆ ଭାଷା ଓ ସଂସ୍କୃତିର ହ୍ରାସ ହେବାକୁ ଲାଗିଲା ।

ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶ ପଥରେ କେବଳ ଉପଯୁକ୍ତ କାରଣ ଏକମାତ୍ର ପ୍ରତିବନ୍ଧକ ବୋଲି କୁହାଯାଇ ପାରିବ ନାହିଁ । ଓଡ଼ିଶାର ଅର୍ଥନୈତିକ ଅବନତି ତଥା ଇଂରେଜମାନଙ୍କର ପକ୍ଷପାତପୂର୍ଣ୍ଣ ନିନ୍ଦନୀୟ ଶାସନ ବ୍ୟବସ୍ଥା ମଧ୍ୟ ଏହାର ଅନ୍ୟତମ କାରଣ ରୂପେ ଦେଖାଦେଇଥିଲା । ଏହି ଦୁର୍ନୀତିପୂର୍ଣ୍ଣ ଶାସନ ବ୍ୟବସ୍ଥା ଫଳରେ ନିଜ ରାଜ୍ୟରେ ଓଡ଼ିଆମାନେ ପରାଧୀନ ଜୀବନଯାପନ କରିବା ସଙ୍ଗେ ସଙ୍ଗେ ସରକାରୀ ନିଯୁକ୍ତି କ୍ଷେତ୍ରରେ ଅତି ଅବହେଳିତ ଅବସ୍ଥାରେ ପଡ଼ିରହିଲେ । ଜମିଜମା ଆଇନର ବିଶୃଙ୍ଖଳା ହେତୁରୁ ଓଡ଼ିଆମାନେ ନିଜର ପରମ୍ପରାଗତ ଭୂସମ୍ପତ୍ତି ହରାଇ ଘାନସ୍ଥାନ ଖବରେ ଦାଣ୍ଡରେ ଭିକାରି ହୋଇ ବୁଲିଲେ । ଏହି ସମୟ ମଧ୍ୟରେ 'ନଅଙ୍କ' ଦୁର୍ଭିକ୍ଷ ମଧ୍ୟ ଓଡ଼ିଆ ଜାତିର ଜରାଜୀର୍ଣ୍ଣ ମେରୁଦଣ୍ଡକୁ ଦବ କରିଦେଇ ପାରିଥିଲା । ଶାସକଗୋଷ୍ଠୀର ସୁଦୃଷ୍ଟି ତଥା ଶାସନଗତ ସୁପରିଚାଳନା ଓଡ଼ିଆମାନଙ୍କ ଭାଗ୍ୟରେ ସମ୍ଭବ ହୋଇଥିଲେ, 'ନଅଙ୍କ' ଦୁର୍ଭିକ୍ଷ ପରି ଏକ କରାଳ ବିପର୍ଯ୍ୟୟରୁ ଓଡ଼ିଆ ଜାତିକୁ ରକ୍ଷା କରାଯାଇ ପାରିଥାନ୍ତା । ଅବଶ୍ୟ ସେହିଧରଣର ଏକ ନିର୍ଯ୍ୟାତନା ଫଳରେ ଓଡ଼ିଶାରେ ଏକ ଜନ-ଜାଗରଣ ସୃଷ୍ଟି ହୋଇଥିଲା । ତାହାର ଫଳରେ ପରବର୍ତ୍ତୀ

କାଳରେ ଅର୍ଥାତ୍ ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଓଡ଼ିଆ ଭାଷା ଓ ସାହିତ୍ୟର ସମ୍ୟକ୍ ଉନ୍ନତି ସାଧିତ ହେବାର ମାର୍ଗ ସୁଗମ ହୋଇଥିଲା ।

## ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶରେ ନୂତନ ଯୁଗ—

ଊନବିଂଶ ଶତାବ୍ଦୀର ଦ୍ୱିତୀୟ ତୃତୀୟ ଦଶକରେ ଖ୍ରୀଷ୍ଟିୟାନ୍ ଧର୍ମପ୍ରଚାରକ ଦଳ ଧର୍ମପ୍ରଚାର ଉଦ୍ଦେଶ୍ୟରେ ଓଡ଼ିଶାକୁ ଆସିଥିଲେ । ସେମାନେ ଏ ଦେଶରେ ଶିକ୍ଷାର ପ୍ରସାର କରାଇ ଶିକ୍ଷିତ ଲୋକମାନଙ୍କୁ ଖ୍ରୀଷ୍ଟଧର୍ମ ଆଡ଼କୁ ଆକୃଷ୍ଟ କରାଇବାର ବିଶେଷ କୌଶଳ ଉଦ୍ଭାବନ କରି କଟକ, ପୁରୀ, ବାଲେଶ୍ୱର ଆଦି କେତେକ ନିର୍ଦ୍ଦିଷ୍ଟ ସ୍ଥାନରେ ଶିକ୍ଷାନୁଷ୍ଠାନ ବସାଇ ସେମାନଙ୍କ ଉଦ୍ଦେଶ୍ୟ ସାଧିତ ହେବାଭଳି ପାଠ୍ୟପୁସ୍ତକମାନଙ୍କର ପ୍ରଚଳନ କରାଇ ପ୍ରାଚୀନପନ୍ଥୀ ରକ୍ଷଣଶୀଳ ହିନ୍ଦୁମାନଙ୍କୁ ଆତଙ୍କିତ କରାଇଥିଲେ । ସେମାନଙ୍କ ଉଦ୍ଦେଶ୍ୟ ଅନେକ ପରିମାଣରେ ସାଧିତ ହୋଇଥିଲା ଏବଂ ଅନେକ ଶିକ୍ଷିତ ଅର୍ଦ୍ଧଶିକ୍ଷିତ ଓଡ଼ିଆ ହିନ୍ଦୁଧର୍ମ ତ୍ୟାଗକରି ଖ୍ରୀଷ୍ଟ-ଧର୍ମରେ ଦୀକ୍ଷିତ ହୋଇଥିଲେ । ଏହି ମିଶନାରୀମାନେ ଓଡ଼ିଶାରେ ପ୍ରଚାର କରାଇବା ଉଦ୍ଦେଶ୍ୟରେ ଖ୍ରୀଷ୍ଟଧର୍ମର ଧର୍ମପୁସ୍ତକ 'ବାଇବେଲ'ର ଓଡ଼ିଆ ଅନୁବାଦ, ବଙ୍ଗଳାର ଶ୍ରୀରାମପୁର ମିଶନାରୀ ପ୍ରେସରେ ଖ୍ରୀ: ଅ: ୧୮୧୧ ସାଲରେ ଛପାଇଥିଲେ । କେତେକ ସମାଲୋଚକଙ୍କ ମତରେ ତାହାହିଁ ହେଉଛି ପ୍ରଥମ ଓଡ଼ିଆ ଛପା ପୁସ୍ତକ । କୌତୁହଳୀ ପାଠକଙ୍କ କୌତୁହଳର ଉପଶମ ନିମିତ୍ତ ଉକ୍ତ ପୁସ୍ତକରୁ କେତେକାଂଶ ଏଠାରେ ପ୍ରଦତ୍ତ ହେଲା ।

"ପ୍ରଭୁହର ସେବକ ମୋଶହର ମରଣର ଉତ୍ତାରୁ ଏମନ୍ତ ହେଲା ନୋନର ପୁତ୍ର ଯିହୋଶୂଆ ମୋଶହର ସେବକକୁ ପ୍ରଭୁହ ଏ କଥା କହିଲେ । ଆମ୍ଭର ସେବକ ମୃତ ହୋଇଅଛି । ଏ ନିମନ୍ତେ ଏବେ ତୁମ୍ଭେ ଉଠ କେଙ୍ଗୁ ଦେଶ ଆମ୍ଭେ ସେମାନଙ୍କୁ ଅର୍ଥାତ୍ ଯିଶ୍ରଏଲର ସନ୍ତାନମାନଙ୍କୁ ଦେଉଁ ତୁମ୍ଭେ ଓ ଏ ସମସ୍ତ ଲୋକମାନେ ଏହି ଯୁର୍ଦ୍ଦନଦୀ ପାରହୋଇ ସେ ଦେଶକୁ ଯାଓ । ଯେମନ୍ତ ଆମ୍ଭେ ମୋଶହକୁ କହିଥିଲୁ ତେମନ୍ତ ଯେଉଁ ପ୍ରତ୍ୟେକ ସ୍ଥାନର ଉପରେ ତୁମ୍ଭର ଗୋଡ଼ର ତାଳୁଆର ବିକ୍ଷେପ ହେବ ସେ ପ୍ରତ୍ୟେକ ସ୍ଥାନକୁ ଆମ୍ଭେ ତୁମ୍ଭମାନଙ୍କୁ ଦେଇଅଛୁଁ । ଏ ଅରଣ୍ୟ ପୁଣି ପୁଣି ଲିବନୋନରୁ ମହାନଦୀ ଫରାତ ସରିକ ଖିତ୍ତିମାନଙ୍କର ସମସ୍ତ ଦେଶ

ଏହିଁ ସୂର୍ଯ୍ୟର ଅସ୍ତ ଯିବାର ସାନର ଦଗରେ ମହାସମୁଦ୍ର ପର୍ଯ୍ୟନ୍ତ ଭୂମ୍ୟମାନଙ୍କର ସୀମା ହେବ ।*

ମିଶନାରୀମାନଙ୍କ ପ୍ରଚାର ସଙ୍ଗେ ସଙ୍ଗେ ରାଜା ରାମମୋହନ ରାୟ ଓ କେଶବ ଚନ୍ଦ୍ର ସେନଙ୍କ ଅଲୌକିକ ପ୍ରତିଭାପ୍ରସୂତ 'ବ୍ରାହ୍ମ ମତବାଦ' ମଧ୍ୟ ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଉତ୍କଳରେ ପ୍ରଚାରିତ ହୋଇ ଅନେକ ସଂସ୍କାରବାଦୀ ବ୍ୟକ୍ତିଙ୍କୁ ପ୍ରଭାବିତ କରିଥିଲା । ଲୋକମାନଙ୍କ ମଧ୍ୟରେ ବ୍ରାହ୍ମ ମତବାଦର ପ୍ରଚାର ଲାଗି କଟକରୁ 'ଉତ୍କଳ ଶୁଭକରୀ' ଓ ବାଲେଶ୍ୱରରୁ 'ଧର୍ମବୋଧିନୀ'★ ଆଦି ପ୍ରଚାର ପତ୍ର ପ୍ରକାଶିତ ହୋଇଥିଲା ଏବଂ ତାହା ସଙ୍ଗେ ସଙ୍ଗେ ମଧ୍ୟ ତତ୍ତ୍ୱମାଳା, ଭଜନମାଳା ଆଦି କେତେଖଣ୍ଡି ଉପାଦେୟ ବ୍ରାହ୍ମ ସମାଜର ମତବାଦ-ସମ୍ବଳିତ-ପୁସ୍ତିକା ପ୍ରକାଶିତ ହୋଇ ଆଧୁନିକ ଓଡ଼ିଆ ସାହିତ୍ୟର ମୂଳପତ୍ତନ ସୁଦୃଢ଼ କରିଥିଲା । ଆଧୁନିକ ଓଡ଼ିଆ ସାହିତ୍ୟ ଇତିହାସର ପ୍ରସିଦ୍ଧ ସମାଲୋଚକ ଡ଼: ନଟବର ସାମନ୍ତରାୟ ଆଧୁନିକ ଓଡ଼ିଆ ସାହିତ୍ୟର ବିକାଶ ସମ୍ବନ୍ଧରେ ମତ ଦେଇ କହିଛନ୍ତି— "ଆଧୁନିକ ଓଡ଼ିଆ ସାହିତ୍ୟ ଗୋଟିଏ ଅର୍ଥରେ ଏକ ସହର ସାହିତ୍ୟ । ଗତ ଶତାବ୍ଦୀର ଯେଉଁ ନୂତନ ଶିକ୍ଷା ସଭ୍ୟତା ସହରକୁ କେନ୍ଦ୍ର କରି ଗଢ଼ିଉଠିଥିଲା ସେହି ଶିକ୍ଷା ସଭ୍ୟତାର କଳାଗତ ଅଭିବ୍ୟକ୍ତି ହେଉଛି ଆଧୁନିକ ଓଡ଼ିଆ ସାହିତ୍ୟ ।×

ଖ୍ରୀଷ୍ଟିୟାନ ମିଶନାରୀ ଓ ବ୍ରାହ୍ମ ମତବାଦର ପ୍ରଚାରକ ମାନଙ୍କ ଧର୍ମପୁସ୍ତକ ଓ ପ୍ରଚାର ପୁସ୍ତକ ଆଦି ପ୍ରଚଳିତ ହୋଇ ଆଧୁନିକ ଓଡ଼ିଆ ସାହିତ୍ୟର ଶ୍ରୀଗଣେଶ ଆରମ୍ଭ କରିବାର ସୁଯୋଗଲାଭ କରିଥିଲା । କେତେକ ବିଦ୍ୟୋତ୍ସାହୀ ବ୍ୟକ୍ତି ଓଡ଼ିଆ ସାହିତ୍ୟର ବିକାଶ ଦିଗରେ ଚିନ୍ତା କରି ଭାଷା ଓ ସାହିତ୍ୟର ପରିପ୍ରଚାର ଉଦ୍ଦେଶ୍ୟରେ ସାହିତ୍ୟିକ ପତ୍ର-ପତ୍ରିକା ଆଦିର ସମ୍ପାଦନା ଆରମ୍ଭ କରିଥିଲେ । ସେ ସମୟରେ ଯେଉଁ କେତେଖଣ୍ଡି ଓଡ଼ିଆ ପତ୍ରିକା, ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ପ୍ରଚାରରେ ବିଶେଷ

---

* ଓଡ଼ିଆ ବାଇବେଲ, ପ୍ରଥମ ପର୍ବ ୧୦-୫ ଅନୁଚ୍ଛେଦ, ପୃ ୧

★ ତ୍ରୈଲୋକ୍ୟନାଥ ମୁଖୋପାଧ୍ୟାୟଙ୍କ ସମ୍ପାଦନାରେ କଟକରୁ ୧୮୬୯ ମସିହାରେ 'ଉତ୍କଳ ଶୁଭକରୀ' ଓ ବାଲେଶ୍ୱରରୁ ୧୮୭୪ରେ 'ଧର୍ମବୋଧିନୀ' ନାମକ ପ୍ରଚାର ପତ୍ର ପ୍ରକାଶିତ ହୋଇଥିଲା । 'ଓଡ଼ିଆ ସାହିତ୍ୟର ଇତିହାସ' ଲେ:—ଡ଼: ନଟବର ସାମନ୍ତରାୟ, ପୃ ୩୨

× 'ଓଡ଼ିଆ ସାହିତ୍ୟର ଇତିହାସ' ଲେ—ଡ଼: ନଟବର ସାମନ୍ତରାୟ, ପୃ ୪୦ ।

ଭାବରେ ଅଂଶଗ୍ରହଣ କରିଥିଲେ, ସେଗୁଡ଼ିକ ମଧ୍ୟରେ 'ଉତ୍କଳ ପୁତ୍ର', 'ଉତ୍କଳ ଦର୍ପଣ' ଓ 'ଉତ୍କଳ ଦୀପିକା'ର ଭୂମିକା ବିଶେଷ ଉଲ୍ଲେଖଯୋଗ୍ୟ ।

ଓଡ଼ିଶା ପୂର୍ଣ୍ଣଭାବରେ ଇଂରେଜମାନଙ୍କର ହସ୍ତଗତ ହେବା ପରେ ଖ୍ରୀଷ୍ଟି-ୟାନ ମିଶନାରୀମାନଙ୍କ ଆନୁକୂଲ୍ୟରେ ଯେଉଁ କେତେଖଣ୍ଡି ପୁସ୍ତିକାର ଛପା କାର୍ଯ୍ୟ ଆରମ୍ଭ ହୋଇଥିଲା, ତନ୍ମଧ୍ୟରେ 'ଫୋର୍ଟ ଉଇଲିୟମ୍' କଲେଜର କାର୍ଯ୍ୟ ବିବରଣୀରୁ ବିଜ୍ଞାପନରୁ ପ୍ରାପ୍ତ ଓଡ଼ିଆ ପଣ୍ଡିତ ପୃତୁସ୍ୱାମଙ୍କ ଅନୂଦିତ 'ବାଇବେଲ' ପ୍ରଥମ ବୋଲି ଜଣାଯାଏ । ଆଉ କେତେକଙ୍କ ମତରେ ପଣ୍ଡିତ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର ସର୍ବ-ପ୍ରଥମେ ଓଡ଼ିଆ ବାଇବେଲର ଅନୁବାଦ କରିଥିଲେ ।* ଏତଦ୍‌ବ୍ୟତୀତ ମିଶନାରୀ ମାନଙ୍କ ପ୍ରଚେଷ୍ଟାରେ ଆହୁରି କେତେକ ପ୍ରଚୁର ପୁସ୍ତିକାର ପ୍ରକାଶନ କରାଯାଇଥିଲା ।

ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଓଡ଼ିଶାରେ ଯେଉଁ ନୂତନ ଶିକ୍ଷା ପଦ୍ଧତିର ପ୍ରଚଳନ କରାଗଲା, ସେଥି ନିମିତ୍ତ ଅନେକ ପାଠ୍ୟପୁସ୍ତକ ପ୍ରଣୟନ କରିବାର ଆବଶ୍ୟକତା ପଡ଼ିଥିଲା । ତେଣୁ ଓଡ଼ିଶାରେ ଇତିହାସ, ଭୂଗୋଳ, ସାହିତ୍ୟ ଓ ଗଣିତ ପୁସ୍ତକମାନ ପ୍ରଣୀତ ହୋଇଥିଲା । ଏଥି ସଙ୍ଗେ ସଙ୍ଗେ ମଧ୍ୟ ଗୋଟିଏ ବିଶେଷ ଅନୁଧ୍ୟାନର ବିଷୟ ହେଉଛି— ଓଡ଼ିଆ କବି ଜୟଦେବଙ୍କ ବିଶ୍ୱବିଶ୍ରୁତ ଗୀତିକାବ୍ୟ 'ଗୀତଗୋବିନ୍ଦ'ର ଛପାକାର୍ଯ୍ୟ ମଧ୍ୟ ଖ୍ରୀ: ଅ: ୧୮୪୩ ବେଳକୁ ହୋଇ ସାରିଥିଲା । ଗୀତଗୋବିନ୍ଦର ଅମୃତ ନିସ୍ୟନ୍ଦନୀ କବିତା ଓଡ଼ିଆ ପ୍ରାଣରେ ଅପୂର୍ବ ସ୍ୱରର ମୂର୍ଚ୍ଛନା ତୋଳିଥିବାରୁ, ଏହାର ପ୍ରକାଶନ ଲାଗି ସେତେବେଳକାର ବିଦ୍ୟୋତ୍ସାହୀ ବ୍ୟକ୍ତିଗଣ ବିଶେଷ ଯତ୍ନବାନ ହୋଇଥିବେ ! ବୋଧହୁଏ 'ଗୀତଗୋବିନ୍ଦ'ର ଏତେ ପ୍ରାଚୀନ ସଂସ୍କରଣ ଅନ୍ୟ କୌଣସି ଭାଷାରେ ହୋଇ ନ ଥିବ । ଏହି ସମୟରେ ଯେଉଁ କେତେଖଣ୍ଡି ଉପାଦେୟ ପୁସ୍ତକ ପ୍ରକାଶିତ ହୋଇଥିଲା, ତନ୍ମଧ୍ୟରେ 'ବତ୍ରିଶ ସିଂହାସନ', 'କବିତାମୃତବିନ୍ଦୁ' ଓ 'ମତିକଥା' ଆଦିର ନାମ ବିଶେଷ ଉଲ୍ଲେଖଯୋଗ୍ୟ ।

ଊନବିଂଶ ଶତାବ୍ଦୀର ବହୁ ପୂର୍ବରୁ ଓଡ଼ିଆ ସାହିତ୍ୟ ଉନ୍ନତିର ଚରମ ସୀମାରେ ଉପନୀତ ହୋଇଥିଲେହେଁ ଓଡ଼ିଆ ଗଦ୍ୟ ସାହିତ୍ୟର ଅତ୍ୟାଧୁନିକ ବିକାଶ ସେ ସମୟ ମଧ୍ୟରେ ଯେପରି ଦ୍ରୁତଗତିରେ ସମ୍ଭବ ହୋଇଥିଲା, ତାହା ବିଶେଷ ପ୍ରଣି-

---

* 'ଓଡ଼ିଆ ସାହିତ୍ୟର ଇତିହାସ' ଲେ— ଡ: ନଟବର ସାମନ୍ତରାୟ, ପୃ ୯୫

ଧ୍ୟାନର ବିଷୟ । ପ୍ରତ୍ୟେକ ଭାରତୀୟ ଭାଷାର (ସଂସ୍କୃତ ବ୍ୟତୀତ) ଗଦ୍ୟ ସାହିତ୍ୟର ଇତିହାସ ଆଲୋଚନା କଲେ ସ୍ପଷ୍ଟଭାବରେ ପ୍ରମାଣ ମିଳେ ଯେ, ପ୍ରାଚୀନ କାଳରେ ପଦ୍ୟ କାବ୍ୟର ବିକାଶ ଦିଗରେ ଯେଉଁପରି ଭାବରେ ସୁନିୟନ୍ତ୍ରିତ ଯୋଜନାର ପରିକଳ୍ପନା କରାଯାଇଥିଲା, ଗଦ୍ୟ କାବ୍ୟର ବିକାଶ ଦିଗରେ ସେ ପ୍ରକାର ପ୍ରୟାସ ଆଦୌ ହୋଇ ନ ଥିଲା ।

ଅନ୍ୟାନ୍ୟ ଆଞ୍ଚଳିକ ଭାଷାର ଗଦ୍ୟ ସାହିତ୍ୟ ପରି ଓଡ଼ିଶାରେ ମଧ୍ୟ ଗଦ୍ୟ ସାହିତ୍ୟର ଉନ୍ନତିରେ ପ୍ରାଚୀନ ଲେଖକମାନଙ୍କର ପ୍ରଚେଷ୍ଟା ବିଶେଷ ପରିଲକ୍ଷିତ ହୁଏନାହିଁ । ତଥାପି ପ୍ରାଚୀନ ଓଡ଼ିଆ ଅଭିଲେଖ, ନାରାୟଣ ସ୍ୱାମୀଙ୍କ ରୁଦ୍ରସୁଧା-ନିଧି, ବିଭିନ୍ନ ବ୍ରତ କଥା, ବତିଶ ସିଂହାସନ, ହିତୋପଦେଶ, ଗୀତଗୋବିନ୍ଦ, ସୂର୍ଯ୍ୟ ସିଦ୍ଧାନ୍ତ, ଶୁଦ୍ଧିଦୀପିକା ଓ ସଙ୍ଗୀତ ନାରାୟଣ ଆଦି ସଂସ୍କୃତ ଗ୍ରନ୍ଥର ଗଦ୍ୟାନୁବାଦ; ମାଦଳାପାଞ୍ଜି, କଳାହାଣ୍ଡି ମାଦଳା, ଚକଡ଼ା, ମୟୂରଭଞ୍ଜ ଇତିହାସ, ଗଣ ସମ୍ମତ ତଥା ବ୍ରଜନାଥ ବଡ଼ଜେନାଙ୍କ 'ଚତୁର ବିନୋଦ' ଆଦି ଅନେକ ଗଦ୍ୟ ପୁସ୍ତକ ଓଡ଼ିଶାରେ ରଚିତ ହୋଇଥିଲା ।

କିନ୍ତୁ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଯେଉଁ ପାଠ୍ୟପୁସ୍ତକମାନ ପ୍ରଣୀତ ହୋଇଥିଲା, ସେ ସମ୍ବନ୍ଧରେ ବିଶେଷ ଅଧ୍ୟୟନ କରି ଡକ୍ଟର ସାମନ୍ତରାୟ ଯେଉଁ ଆଲୋଚନା କରିଛନ୍ତି, ତହିଁରୁ କହାଯାଏ ଯେ, ସେ ସମୟରେ ଯେଉଁ ଓଡ଼ିଆ ଗଦ୍ୟ ଅନୁବାଦ ବା ମୌଳିକ ଗଦ୍ୟ ରଚନାର ସୂତ୍ରପାତ ହୋଇଥିଲା, ସେଥିରେ ଇଂରେଜୀ ଭାଷାର ବାକ୍ୟ ଗଠନ ପ୍ରଣାଳୀ ଏବଂ ତାତ୍କାଳୀନ ସମାଜରେ ଇଂରେଜୀ ପଢ଼ୁଆ ବିଦ୍ୱାନ ମାନଙ୍କ କଥିତ ଭାଷା ପଦ୍ଧତିର ଅନୁସରଣ କରାଯାଇଥିଲା ।

ଗତ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଶିକ୍ଷା ବିଭାଗର ନିୟମାନୁସାରେ ଯେଉଁ ସବୁ ଓଡ଼ିଆ ପାଠ୍ୟପୁସ୍ତକର ପ୍ରଣୟନ କରାଯାଇଥିଲା; ସେଥିମଧ୍ୟରେ କାଦମ୍ବରୀ, ରଘୁବଂଶ, ଉତ୍ତର ରାମଚରିତ ଆଦି ପୁସ୍ତକରୁ ବିଶେଷ ଉପଦେଶାତ୍ମକ ଅଂଶର ପଦ୍ୟ ଗଦ୍ୟାନୁବାଦ କରାଯାଇ, ଛାତ୍ରମାନଙ୍କ ମଧ୍ୟରେ ପରିବେଷଣ କରାଯାଇ-ଥିଲା ଏବଂ ଶିକ୍ଷାକ୍ଷେତ୍ରରେ ମିତଶୀଡ଼ାର ପ୍ରଚଳନ ଉପରେ ବିଶେଷ ଗୁରୁତ୍ୱ ଦିଆ ଯାଉଥିଲା । ସେ ସମୟରେ ଏ ଧରଣର ପୁସ୍ତକ ପ୍ରଣୟନରେ ଯେଉଁମାନେ ଅଂଶ-ଗ୍ରହଣ କରିଥିଲେ, ସେମାନଙ୍କ ମଧ୍ୟରେ ଫକୀରମୋହନ, ଗୌରୀଶଙ୍କର, ବିଚ୍ଛନ୍ଦଚରଣ

ପଟ୍ଟନାୟକ, ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, ଗୋବିନ୍ଦ ରଥ, ଦ୍ୱାରକାନାଥ ଚକ୍ରବର୍ତ୍ତୀ, ରଘୁନାଥ ମିଶ୍ର, କପିଳେଶ୍ୱର ବିଦ୍ୟାଭୂଷଣ ଆଦି ବିଦ୍ୱାନ୍‌ଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଯେଉଁ ପୁସ୍ତକମାନ ଶିକ୍ଷାସ୍ଥଳରେ ପ୍ରଚଳନ କରାଯାଇଥିଲା, ସେଗୁଡ଼ିକ ମୁଖ୍ୟତଃ ବଙ୍ଗଳାରୁ ଅନୁବାଦ କରାଯାଉଥିଲା କିମ୍ବା ଇଂରେଜୀର ଅବଲମ୍ବନରେ ଲେଖାଯାଉଥିଲା । ମାତ୍ର ସେହି ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ସେ ପ୍ରକାର ପଦ୍ଧତିର ପରିବର୍ତ୍ତନ ହୋଇଥିବାର ପ୍ରମାଣ ମିଳୁଛି ।

'ରାମ ବିଳାସ' ନାମକ ଏକ ପୁସ୍ତକର ବିଜ୍ଞାପନରେ ସ୍ୱର୍ଗତଃ କପିଳେଶ୍ୱର ବିଦ୍ୟାଭୂଷଣ ଲେଖିଛନ୍ତି—

"ଏହି ଉତ୍କଳ ଦେଶରେ ପୂର୍ବେ ବଙ୍ଗଳା ପୁସ୍ତକ ଚଳୁଥିବାରୁ ତାଦୃଶ ବିଦ୍ୟାଳୟ ଉପଯୋଗୀ ଉତ୍କଳ ଭାଷାର ପୁସ୍ତକ ପ୍ରଚଳିତ ନ ଥିଲା ଏବଂ ଯାହାକିଛି ସ୍ଥାନ ସ୍ଥାନାନ୍ତରେ ଉତ୍କଳ ଭାଷାର ପୁସ୍ତକ ପ୍ରକାଶ ହୋଇଅଛି । ସେହି ପୁସ୍ତକାବଳୀରେ ପ୍ରାୟ ଅନେକ ବୈଲକ୍ଷଣ୍ୟ ଦେଖାଯାଏ । × × ଏ ପୁସ୍ତକ କୌଣସି ପୁସ୍ତକର ଅନୁବାଦିତ ନୁହଇ— ଏହା ଅବଶ୍ୟ ପାଠକମାନେ ଜାଣିବେ ।"*

ଯାହାହେଉ, ଏହି ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଆ ସାହିତ୍ୟର ବିକାଶ ଦିଗରେ ଯେଉଁ ସମୁଚିତ ବ୍ୟବସ୍ଥା ଗ୍ରହଣ କରାଯାଇ ସାହିତ୍ୟର ରୁଦ୍ଧ ମାର୍ଗକୁ ପରିଷ୍କୃତ କରାଗଲା, ସେଥିରେ କେତେଜଣ ଜନନେତା ଓ ଶିକ୍ଷାବିଦ୍‌ଙ୍କ ପରିଶ୍ରମ ସେ ଯଥେଷ୍ଟ କାର୍ଯ୍ୟ କରିଛି; ଏ ବିଷୟରେ କାହାର ଦ୍ୱିମତ ନାହିଁ । ଅନ୍ୟଥା ଆଧୁନିକ ଓଡ଼ିଆ ସାହିତ୍ୟ ନାମରେ ଯାହା ଆଜି ଆମ୍ଭମାନଙ୍କ ସମ୍ମୁଖରେ ଉପସ୍ଥାପିତ ହୋଇଛି, ତାହାର ଆଦି ସ୍ଫୁରଣ ଠିକଏ ବିଳମ୍ବରେ ଘଟିଥାନ୍ତା !

ଊନବିଂଶ ଶତାବ୍ଦୀରେ ଓଡ଼ିଆ ସାହିତ୍ୟର ଆଧୁନିକୀକରଣରେ ଯେଉଁ ସାମୁଦାୟିକ ପ୍ରଚେଷ୍ଟା ହୋଇଥିଲା, ସେଥିରେ ପୂର୍ବୋକ୍ତ କେତେଜଣ ଦେଶପ୍ରାଣ ବ୍ୟକ୍ତିଙ୍କ ନିଷ୍ଠା ବିଶେଷ ଭାବରେ କାର୍ଯ୍ୟ କରିଥିଲା । ଏତଦ୍‌ବ୍ୟତୀତ ମିଶନାରୀମାନଙ୍କ ପକ୍ଷରୁ ତଥା ସାଧାରଣ ବିଦ୍ୟୋତ୍ସାହୀ ବ୍ୟକ୍ତିଙ୍କ ତରଫରୁ ଯେଉଁ କେତେଖଣ୍ଡି ଧର୍ମ

---

* 'ଓଡ଼ିଆ ସାହିତ୍ୟର ଇତିହାସ' ଲେ— ଡକ୍ଟର ନଟବର ସାମନ୍ତରାୟ, ପୃ ୧୧୬

ପ୍ରଚାର ମୂଳକ ତଥା ସାହିତ୍ୟକ ପତ୍ରିକା ପ୍ରକାଶ ପାଇଲା, ତାହା ଆଧୁନିକ ଓଡ଼ିଆ ସାହିତ୍ୟର ମୂଳଭିତ୍ତି ସ୍ଥାପନ କରି ପାରିଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ତେଣୁ ସେହି ଭାଷା ବିବର୍ଦ୍ଧିନୀ ପତ୍ରିକା ଗୁଡ଼ିକର ଏକ ସଂକ୍ଷିପ୍ତ ପରିଚୟ ସମ୍ବନ୍ଧରେ ଉଲ୍ଲେଖ କରିବା ଅତ୍ୟନ୍ତ ସମୀଚୀନ ହେବ ।

ଓଡ଼ିଶାର ପ୍ରଥମ ଓଡ଼ିଆ ପତ୍ରିକା ପ୍ରକାଶନ କ୍ଷେତ୍ରରେ ମିଶନାରୀମାନଙ୍କ ଦାନ ଅତୁଳନୀୟ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଅବଶ୍ୟ ପତ୍ରିକା ପ୍ରକାଶନ ମୂଳରେ ସେମାନଙ୍କ ଧର୍ମ ପ୍ରଚାର ଥିଲା ମୁଖ୍ୟ ଉଦ୍ଦେଶ୍ୟ; ତଥାପି ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରଚାର ଦିଗରେ ସେମାନେ ଯେ ଯଥେଷ୍ଟ କାମ କରିଛନ୍ତି, ଏ ବିଷୟରେ କାହାରି ସନ୍ଦେହ ନାହିଁ ।

୧୮୪୯ ମସିହାରେ 'ଜ୍ଞାନ ଋଣ' ନାମକ ଏକ ଓଡ଼ିଆ ପତ୍ରିକା କଟକରୁ ମି: ଲେସି ନାମକ ଜଣୈକ ଇଂରେଜଙ୍କ ସମ୍ପାଦନାରେ ପ୍ରକାଶ ପାଇଥିଲା । ଏହା ପ୍ରଥମ ଓଡ଼ିଆ ପତ୍ରିକା ରୂପେ ଓଡ଼ିଶାରେ ସମ୍ମାନାସ୍ପଦ ସ୍ଥାନ ଅଧିକାର କରିଥିଲା ।* ଏହି ପତ୍ରିକା ଅଳ୍ପଦିନ ମାତ୍ର ପ୍ରକାଶ ପାଇବା ପରେ ଲୋକପ୍ରିୟତା ଅର୍ଜନ କରି ନ ପାରି ବନ୍ଦ ହୋଇ ଯାଇଥିଲା । ଏହା ପରେ ମିଶନାରୀମାନଙ୍କ ପକ୍ଷରୁ 'ଅରୁଣୋଦୟ' ନାମରେ ଅନ୍ୟ ଏକ ପତ୍ରିକା ପ୍ରକାଶ ପାଇଥିବାର ପ୍ରମାଣ ଶ୍ରୀ ଚନ୍ଦ୍ରଶେଖର ମହାପାତ୍ରଙ୍କ ଲିଖିତ 'ଓଡ଼ିଶାର ପତ୍ର ପତ୍ରିକା'ନାମକ ପୁସ୍ତିକାରୁ ଜଣାଯାଏ ।★ ମାତ୍ର ଆଲୋଚକ ଡ଼. ସାମନ୍ତରାୟଙ୍କ ଆଲୋଚନାରୁ ଜଣାଯାଏ ଯେ, 'ଜ୍ଞାନାରୁଣ' ପରେ ୧୮୫୬ରେ 'ପ୍ରବୋଧ ଚନ୍ଦ୍ରିକା' ନାମରେ ଅନ୍ୟ ଏକ ପତ୍ରିକା ଲେସି ସାହେବଙ୍କ ସମ୍ପାଦନାରେ ପ୍ରକାଶ ପାଇଥିଲା ଏବଂ ୧୮୬୧ ମସିହାରେ 'ଅରୁଣୋଦୟ'ଆତ୍ମ ପ୍ରକାଶ ଲାଭ କରିଥିଲା । ଏତଦ୍‌ବ୍ୟତୀତ 'ଖ୍ରୀଷ୍ଟିୟାନ ମିତ୍ର','ସ୍ୱଦେଶୀ' 'ପ୍ରଭାତ ତାରା'ପ୍ରଭୃତି କେତେଗୁଡ଼ିଏ ଧର୍ମ ପ୍ରଚାର ମୂଳକ ପତ୍ରିକା ମିଶନାରୀମାନଙ୍କ ଉଦ୍ୟମରେ ପ୍ରକାଶ ପାଇଥିଲା ।

ଖ୍ରୀଷ୍ଟିୟାନ୍ ଧର୍ମ ଓ ମିଶନାରୀଙ୍କ ପ୍ରତି ସାଧାରଣ ଜନତାର ଘୃଣାଭାବ ରହିଥିବା ଯୋଗୁଁ, ସେମାନଙ୍କ ଦ୍ୱାରା ପ୍ରକାଶିତ ତଥା ପ୍ରଚାରିତ ପତ୍ରିକା ଲୋକସମାଜରେ ଆଦୃତ ହୋଇ ନ ଥିଲା । ଲୋକମତ ପ୍ରତି ଭ୍ରୂକ୍ଷେପ ନ କରି ମିଶନାରୀମାନେ

---

* 'ଓଡ଼ିଶାର ପତ୍ରପତ୍ରିକା' ପୃ ୬ ଓ 'ଓଡ଼ିଆ ସାହିତ୍ୟର ଇତିହାସ' ଲେ—ଡକ୍ଟର ନଟବର ସାମନ୍ତରାୟ, ପୃ ୧୭୪

★ 'ଓଡ଼ିଶାର ପତ୍ରପତ୍ରିକା' ପୃ ୬

ଧିରଂକାଶି ସାହାଯ୍ୟ ବଳରେ ପତ୍ରିକା ପ୍ରକାଶ କରି ଲୋକପ୍ରିୟତା ଅର୍ଜନ କରିବାକୁ ଯେଉଁ ପ୍ରୟାସ କରିଥିଲେ ତାହା ବିଫଳ ହୋଇଥିଲା । ତତ୍ ସଙ୍ଗେ ସଙ୍ଗେ ମଧ୍ୟ ପତ୍ରିକା ପାଠ ପ୍ରତି ଜନସାଧାରଣଙ୍କର ବିଶେଷ ସ୍ପୃହା ଜାଗ୍ରତ ହୋଇ ନ ଥିବାରୁ ସେତେବେଳେ ପତ୍ରିକା ଗୁଡ଼ିକୁ ବିକ୍ରୟ କରିବା ଆଦୌ ସହଜସାଧ୍ୟ ବ୍ୟାପାର ନ ଥିଲା ।

ଖ୍ରୀ: ଅ: ୧୮୬୬ ଅଗଷ୍ଟ ମାସରେ ଓଡ଼ିଶାର କେତେଜଣ ଯୁଗଜନ୍ମା ସାହିତ୍ୟିକ ତଥା ଦେଶପ୍ରାଣ ବ୍ୟକ୍ତିଙ୍କ ସହଯୋଗରେ 'ଉତ୍କଳ ଦୀପିକା' ନାମରେ ଗୋଟିଏ ପତ୍ରିକା ପ୍ରକାଶ ପାଇଥିଲା । ପ୍ରକୃତ ପକ୍ଷରେ ଦେଖିବାକୁ ଗଲେ, 'ଦୀପିକା' ହିଁ ଓଡ଼ିଶାର ସର୍ବପ୍ରଥମ ଓଡ଼ିଆ ଜାତିର ପ୍ରତିନିଧିମୂଳକ ପତ୍ରିକା ରୂପେ ଜନସାଧାରଣଙ୍କ ମଧ୍ୟରେ ପ୍ରତିଷ୍ଠା ଲାଭ କରିଥିଲା । ଆଲୋଚକ ଶ୍ରୀ ଚନ୍ଦ୍ରଶେଖର ମହାପାତ୍ରଙ୍କ ମତରେ "ପ୍ରାୟ ସତୁରି ବର୍ଷ ଓଡ଼ିଶାର ସାଧାରଣ ଜୀବନରେ ଏହି ପତ୍ରିକା ବିଶେଷ ପ୍ରଭାବ ବିସ୍ତାର କରିପାରିଥିଲା । ଏହି ପତ୍ରିକାରୁ ହିଁ ସେତେବେଳର ଓଡ଼ିଶାର ସାମାଜିକ, ରାଜନୈତିକ ଏବଂ ଅର୍ଥନୈତିକ ଅବସ୍ଥା ସମ୍ପର୍କରେ ଏକ ଛବି ଜାଣିବାକୁ ମିଳେ । ଓଡ଼ିଶାର କେତେକ ଅଞ୍ଚଳର ସମ୍ବାଦପତ୍ର କହିଲେ ଲୋକେ 'ଦୀପିକା' ବୁଝୁଥିଲେ ।*

୧୮୬୬—୭୦ ସାଲ ମଧ୍ୟରେ ଓଡ଼ିଶାର ବିଭିନ୍ନ ସ୍ଥାନରୁ ଅନ୍ୟ ଯେଉଁ କେତେଖଣ୍ଡି ପତ୍ରିକା ପ୍ରକାଶ ପାଇଥିଲା, ତନ୍ମଧ୍ୟରେ 'ବାଲେଶ୍ୱର ସମ୍ବାଦ ବାହିକା', 'ଉତ୍କଳ ହିତୈଷିଣୀ', 'ଉତ୍କଳ ଶୁଭକରୀ' ଆଦି ପ୍ରଧାନ । ଏହି ପତ୍ରିକାଗୁଡ଼ିକ ସେତେବେଳକାର ସାମାଜିକ ସ୍ୱରୂପ, ଦେଶର ଅଭାବ ଅସୁବିଧା ତଥା ଓଡ଼ିଆ ଭାଷା ଆନ୍ଦୋଳନ ପ୍ରଭୃତି ଅନେକ ଲୋକହିତକର କାର୍ଯ୍ୟରେ ଅଂଶଗ୍ରହଣ କରି ଓଡ଼ିଆ ଜନସାଧାରଣଙ୍କର ପ୍ରିୟତମ ପତ୍ରିକା ରୂପେ ସମାଜରେ ସ୍ଥାନ ଅଧିକାର କରିଥିଲେ । ବିଶେଷତଃ ନ'ଅଙ୍କ ଦୁର୍ଭିକ୍ଷର କରାଳ ଛବି ଏହି ପତ୍ରିକାଗୁଡ଼ିକ ମାଧ୍ୟମରେ ପ୍ରସାରିତ ହୋଇ ଜାତିର ଚିନ୍ତାଶୀଳ ବ୍ୟକ୍ତିଙ୍କ ପ୍ରାଣରେ ନବୋନ୍ମାଦନା ସୃଷ୍ଟି କରିଥିଲା । ଏହି ପତ୍ରିକାଗୁଡ଼ିକର ସମ୍ପାଦକମାନେ ଓଡ଼ିଶାର ସୁପ୍ତ ଯୁବଶକ୍ତିର କର୍ଣ୍ଣରେ ନବଯୁଗର ପ୍ରଗତିଶୀଳ ମନ୍ତ୍ର ଦୀକ୍ଷାଦାନ କରି ଓଡ଼ିଆ ଜାତିର ପ୍ରଗତି ପଥରେ ଯେଉଁ ଅତୁଳନୀୟ

---

* 'ଓଡ଼ିଶାର ପତ୍ରପତ୍ରିକା' ପୃ ୮

କାର୍ଯ୍ୟ କଲେ ତାହା ଜାତିର ଇତିହାସରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି, ଏଥିରେ ସନ୍ଦେହ ନାହିଁ । ଏଥି ସଙ୍ଗେ ସଙ୍ଗେ ମଧ୍ୟ ଏହି ପତ୍ରିକା ମାଧ୍ୟମରେ ଆଧୁନିକ ଓଡ଼ିଆ ସାହିତ୍ୟର ବିକାଶ ଦିଗରେ ମୂଳଭିତ୍ତିର ସ୍ଥାପନା କରି ଯାଇ ପାରିଥିଲା ।

୧୮୭୧ ସାଲରୁ ଆରମ୍ଭ କରି ୧୮୮୦ ମଧ୍ୟରେ ଅନେକଗୁଡ଼ିଏ ଓଡ଼ିଆ ପତ୍ରିକା ପ୍ରକାଶ ପାଇଥିଲା । ସେହି ପତ୍ରିକାଗୁଡ଼ିକ ମଧ୍ୟରେ ଫକୀରମୋହନଙ୍କ ସମ୍ପାଦନାରେ 'ଉତ୍କଳ ପୁତ୍ର', ଶ୍ରୀଗୋବିନ୍ଦନାଥ ମିତ୍ରଙ୍କ ସମ୍ପାଦନାରେ 'ଭଗବଦ୍ ଭକ୍ତି ପ୍ରଦାୟିନୀ' ଓ ଅନ୍ୟାନ୍ୟ କେତେଜଣ ସମ୍ପାଦକଙ୍କ ସମ୍ପାଦନାରେ ବିଦେଶୀ', ଶୀର୍ଷକ ଧର୍ମବୋଧିନୀ, ଚନ୍ଦ୍ରିକା, ଉତ୍କଳ ସଂସ୍କାରକ, ସ୍ୱଦେଶୀ, ଉତ୍କଳ ମଧୁପ, ମୟୂରଭଞ୍ଜ ପାକ୍ଷିକ ପତ୍ରିକା, କୋହିନୂର ଓ ପୁରୁଷୋତ୍ତମ ଦୀପିକା ଆଦି ପ୍ରଧାନ ।

ଏହି ସମସ୍ତ ମଧ୍ୟରେ ପୂର୍ବୋକ୍ତ ପତ୍ରିକାଗୁଡ଼ିକ ଆଧୁନିକ ଓଡ଼ିଆ ସାହିତ୍ୟର ଅଗ୍ରଗତି, ଦେଶରେ ନୂତନ ଚିନ୍ତାଧାରାର ବିକାଶ ତଥା ଧର୍ମ ମତବାଦର ଆଲୋଚନା ସମ୍ବନ୍ଧରେ ଯେଉଁ ଆତ୍ମମୁଖ୍ୟ ଗ୍ରହଣ କରିଥିଲେ, ତା'ର ପଟାନ୍ତର ନାହିଁ । ଅବଶ୍ୟ ଅଳ୍ପକାଳ ମଧ୍ୟରେ ପତ୍ରିକାଗୁଡ଼ିକ ବିଲୟ ଭଜିଥିଲେ ହେଁ, ଦେଶର ସେହି ମେଘାଚ୍ଛନ୍ନ ରଜନୀରେ ପଥହରା ପଥିକର ମାର୍ଗ ନିର୍ଦ୍ଦେଶ ଲାଗି ବିଦ୍ୟୁତ୍ ପରି କାର୍ଯ୍ୟ କରିଥିଲେ । ଓଡ଼ିଆ ଭାଷା, ସାହିତ୍ୟ ଓ ସାମାଜିକତାର ଦୁର୍ଦ୍ଦିନ ବେଳେ ସେହି ପତ୍ରିକା ଗୁଡ଼ିକ ପ୍ରକାଶ ପାଇ ନ ଥିଲେ, ଆଜି ଓଡ଼ିଆ ଭାଷା, ସାହିତ୍ୟ ଓ ସାମାଜିକ କ୍ଷେତ୍ରରେ ଯେଉଁ ଅଗ୍ରଗତି ସମ୍ଭବ ହୋଇଛି, ତା' ହୁଏତ ଆକାଶ କୁସୁମରେ ପରିଣତ ହୋଇଥାଆନ୍ତା !

ସନ ୧୮୮୧ ଠାରୁ ବିଂଶ ଶତାବ୍ଦୀର ପ୍ରାରମ୍ଭ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟିକ ତଥା ପ୍ରଚୁର ମୂଳକ ପତ୍ରିକାର ଯେଉଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ପରିଦୃଷ୍ଟ ହୁଏ, ତନ୍ମଧ୍ୟରେ 'ସମ୍ବଲପୁର ହିତୈଷିଣୀ', ଇନ୍ଦ୍ରଧନୁ ଓ ବିଜୁଳୀର ଭୂମିକା ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ସନ ୧୮୮୯ ମସିହାରେ ବାମଣ୍ଡାର ରାଜା ସ୍ୱ: ସୁଚଳଦେବଙ୍କ ପୃଷ୍ଠପୋଷକତାରେ ତଥା ସ୍ୱ: ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନାରେ 'ସମ୍ବଲପୁର ହିତୈଷିଣୀ' ଆତ୍ମପ୍ରକାଶ ଲାଭ କରିଥିଲା । ଉକ୍ତ ପତ୍ରିକାରେ ଆଞ୍ଚଳିକ ସମ୍ବାଦ ପରିବେଷିତ ହେବା ସଙ୍ଗେ ସଙ୍ଗେ ସର୍ବଭାରତୀୟ ସମ୍ବାଦ ମଧ୍ୟ ପ୍ରକାଶିତ ହେଉଥିଲା ।

ମୟୂରଭଞ୍ଜର ତଦାମାନ୍ତନ ରାଜା ରାମଚନ୍ଦ୍ର ଭଞ୍ଜଙ୍କ ପୃଷ୍ଠପୋଷକତାରେ 'ଉତ୍କଳପ୍ରଭା' ନାମକ ଏକ ସାହିତ୍ୟିକ ପତ୍ରିକା ପ୍ରକାଶ ପାଇଲା । ଉକ୍ତ ପତ୍ରିକାରେ କବିବର ରାଧାନାଥ ରାୟ, ଉତ୍କଳକବି ମଧୁସୂଦନ, ନାଟ୍ୟକାର ରାମଶଙ୍କର ଓ ବ୍ୟାସ-କବି ଫକୀରମୋହନ, ଲାଲା ରାମନାରାୟଣ ରାୟ, ଗୋବିନ୍ଦଚନ୍ଦ୍ର ମହାପାତ୍ର (ମହା-ଭାରତର ଗଦ୍ୟାନୁବାଦକ), ଚନ୍ଦ୍ରମୋହନ ମହାରଣା, ବିଶ୍ୱନାଥ କର ପ୍ରଭୃତିଙ୍କର ମୂଲ୍ୟବାନ୍ ଲେଖାମାନ ପ୍ରକାଶିତ ହେଲା ।

ଶ୍ରୀ ଚନ୍ଦ୍ରଶେଖର ମହାପାତ୍ରଙ୍କ ଆଲୋଚନାରୁ* ଜଣାଯାଏ ଯେ, ଉକ୍ତ ପତ୍ର-ପତ୍ରିକା ଜରିଆରେ ଓଡ଼ିଆ ସାହିତ୍ୟର ନୂତନ ଅଭିରୁଚିର ବିକାଶ ହେବା ସଙ୍ଗେ ସଙ୍ଗେ, ଉପେନ୍ଦ୍ର ଭଞ୍ଜଙ୍କ ସାହିତ୍ୟ ପ୍ରତି ବିରୋଧ ମନୋଭାବ ପ୍ରକାଶ ପାଇଲା । ଏଥିରେ ଭଞ୍ଜୀୟ ଶୈଳୀର ସମର୍ଥକମାନେ କଟକରୁ ପ୍ରକାଶିତ 'ଉତ୍କଳ ଦୀପିକା' ମାଧ୍ୟମରେ ତା'ର ପ୍ରତିବାଦ କଲେ । କିନ୍ତୁ ତା' ପରେ ପରେ ୧୮୯୩ ମସିହାରେ ଭଞ୍ଜ ସାହି-ତ୍ୟର ସମର୍ଥକମାନଙ୍କ ଉଦ୍ୟମରେ 'ଇନ୍ଦ୍ରଧନୁ' ନାମରେ ଏକ ସାହିତ୍ୟିକ ପତ୍ରିକା ପ୍ରକାଶିତ ହୋଇ, ଭଞ୍ଜ ସାହିତ୍ୟର ଅର୍ଥ ଅର୍ଥାନ୍ତର ମୂଳକ ଲେଖାମାନ ପ୍ରକାଶ ପାଇଲା ।

ଭଞ୍ଜୀୟ ରୀତିର ବିରୋଧୀମାନଙ୍କୁ 'ଇନ୍ଦ୍ରଧନୁ' ମାଧ୍ୟମରେ ଅତି କଟୁ ସମାଲୋଚନା କରାଯିବାରୁ ସେମାନଙ୍କ ଉଦ୍ୟମରେ ବାମଣ୍ଡାରୁ 'ବିଜୁଳୀ' ନାମକ ଏକ ସାହିତ୍ୟିକ ପତ୍ରିକା ସେହିବର୍ଷ ପ୍ରକାଶିତ ହୋଇ 'ଇନ୍ଦ୍ରଧନୁ'ରେ ପ୍ରକାଶିତ ଲେଖାର ପ୍ରତିବାଦ ଜଣାଇଲା । 'ଇନ୍ଦ୍ରଧନୁ' ଓ 'ବିଜୁଳୀ'ରେ ସମୟ ସମୟରେ ବିବାଦାସ୍ପଦ ଲେଖାମାନ ପ୍ରକାଶିତ ହୋଇ ଉଭୟ ଗୋଷ୍ଠିର ଲୋକମାନଙ୍କୁ ଆଲୋଚନାତ୍ମକ ପ୍ରବନ୍ଧ ଲେଖିବା ଲାଗି ଯଥେଷ୍ଟ ପ୍ରେରଣା ଦେଇଥିଲା । ଅବଶ୍ୟ ଏ ଧରଣର ବିବାଦ ସାହିତ୍ୟ କ୍ଷେତ୍ରରେ ଶୋଭନୀୟ ନ ହେଲେ ମଧ୍ୟ ସମାଲୋଚନାତ୍ମକ ଲେଖାମାନ ପ୍ରକାଶ ପାଇବାରେ ତାହା ଯେ ଏକ ଉପଯୁକ୍ତ ମାଧ୍ୟମ ଥିଲା, ଏଥିରେ ସନ୍ଦେହ ନାହିଁ ।

ଏହି ଉଭୟ ଗୋଷ୍ଠିର ବିବାଦ ଫଳରେ ଓଡ଼ିଶାର ଯୁବ ଓ ଲେଖକଗୋଷ୍ଠି ସଜାଗ ହୋଇ ଯାଇଥିଲେ । ତେଣୁ ସେତେବେଳେ ସମାଲୋଚନାତ୍ମକ ଲେଖା ପ୍ରକାଶ

* 'ଓଡ଼ିଶାର ପତ୍ରପତ୍ରିକା' ପୃ ୧୬

ପ୍ରାଇବା ସଙ୍ଗେ ସଙ୍ଗେ ମୌଳିକ ଲେଖାମାନ ମଧ୍ଯ ବହୁ ସଂଖ୍ୟାରେ ଲେଖାଯାଉଥିଲା । ସାହିତ୍ୟିକ ସମାଲୋଚନାର ମାଧ୍ୟମରେ ଚାଲିଥିବା ପରସ୍ପର ବାଦବିସମ୍ବାଦ ଭୁଲି ସାହିତ୍ୟର ଶାଶ୍ୱତ ସତ୍ୟ ତଥା ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରାକୃତ ମାର୍ଗ ନିର୍ଦ୍ଦେଶ କରିବା ଉଦ୍ଦେଶ୍ୟରେ ସ୍ୱ: ବିଶ୍ୱନାଥ କରଙ୍କ ସମ୍ପାଦନାରେ 'ଉତ୍କଳ ସାହିତ୍ୟ' ନାମକ ଏକ ଯୁଗୋପଯୋଗୀ ପତ୍ରିକା ମାଧ୍ୟମରେ ସାହିତ୍ୟ କ୍ଷେତ୍ରରେ ସମ୍ପାଦକଙ୍କ ବଳିଷ୍ଠ ମତ ମତ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଚନ୍ଦ୍ରମୋହନ ମହାରଣା, ନନ୍ଦକିଶୋର ବଳ, ଦାମୋଦର କର, କୃଷ୍ଣପ୍ରସାଦ ଚୌଧୁରୀ, ଶ୍ୟାମସୁନ୍ଦର ନନ୍ଦ, ବୈଦ୍ୟନାଥ କର, ଗୋପାଳଚନ୍ଦ୍ର ପ୍ରହରାଜ, ମୃତ୍ୟୁଞ୍ଜୟ ରଥ, ଉତ୍କଳମଣି ଚରଣ ପଟ୍ଟନାୟକ, ବିନାୟକ ମିଶ୍ର ଓ ଗିରିଜାଶଙ୍କର ରଥ ପ୍ରଭୃତି କବି, ପ୍ରାବନ୍ଧିକ, ସମାଲୋଚକ, ଗାଳ୍ପିକମାନଙ୍କ ପ୍ରତିଭା ପ୍ରସୂତ ରଚନାମାନ ଦେଶବାସୀଙ୍କ ସମ୍ମୁଖରେ ପରିବେଷିତ ହେଲା । ଏହାର ଫଳରେ ଜାତୀୟ ସଂଗଠନ ଦୃଢ଼ ହେବା ସଙ୍ଗେ ସଙ୍ଗେ ଆଧୁନିକ ସାହିତ୍ୟର ଯେଉଁ ପ୍ରଭୂତ କଲ୍ୟାଣ ସାଧିତ ହୋଇଥିଲା, ସେ ସମ୍ବନ୍ଧରେ ଅଧ୍ୟାପକ ଡକ୍ଟର ନଟବର ସାମନ୍ତରାୟଙ୍କ ଅଭିମତ ଏଠାରେ ପ୍ରଦତ୍ତ ହେଲା—

"ତଥାପି ଏହା ନିଃସନ୍ଦେହରେ କୁହାଯାଇ ପାରେ ଯେ, ସମ୍ବାଦପତ୍ର ଏ ଦେଶ ଯୁବ ଚିତ୍ତରେ ଯେଉଁ ଅଭିନବ ବିଚାର ଧାରାର ପ୍ରଚାର କଲେ ତାହାହିଁ ସାହିତ୍ୟିକ ପତ୍ରିକାରେ ନୂତନ ସୃଷ୍ଟି ରୂପେ ଦେଖାଦେଇ,ଆଧୁନିକ ଓଡ଼ିଆ ସାହିତ୍ୟର ମୂଳ ପତ୍ତନ ଗଢ଼ି ଉଠିବାରେ ସହାୟକ ହୋଇଥିଲା । ତେଣୁ ସାହିତ୍ୟର ଇତିହାସ ପ୍ରଣୟନ ବେଳେ ଏମାନଙ୍କର ପରୋକ୍ଷ ଅବଦାନ ସର୍ବାଦୌ ଅବିସ୍ମରଣୀୟ" । *

ଓଡ଼ିଆ ଆଧୁନିକ ସାହିତ୍ୟର ପୃଷ୍ଠଭୂମି ସମ୍ବନ୍ଧରେ ପୂର୍ବବର୍ତ୍ତୀ ଅନୁଚ୍ଛେଦମାନଙ୍କରେ ଯେଉଁ ଆଲୋଚନା କରାଯାଇଛି, ତାହା ଓଡ଼ିଆ ସାହିତ୍ୟର ନବକଳେବର ସଙ୍ଗଠନରେ ଯଥେଷ୍ଟ ଉପାଦାନ ଯୋଗାଇଛି । ଅନ୍ୟଥା ସାରଳା ଦାସଙ୍କ ଯୁଗରୁ ଆରମ୍ଭ କରି ପାଞ୍ଚଶହ ବର୍ଷର ପ୍ରାଚୀନ ଭିତ୍ତି ଉପରେ ଆଧୁନିକ ପରିପାଟୀରେ ଏକ ବିଶାଳ ନୂତନ ସୌଧ ନିର୍ମାଣ କରିବା, ଏ ଜାତି ପକ୍ଷରେ ଆଦୌ ସହଜସାଧ୍ୟ ବ୍ୟାପାର ହୋଇ ନ ଥାନ୍ତା ।

* 'ଓଡ଼ିଆ ସାହିତ୍ୟର ଇତିହାସ'—ପୃ ୨୫୧

( ଅଟେସ୍ତର )

ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ, ସଂସ୍କୃତ ସାହିତ୍ୟର ପ୍ରାଦେଶିକ ଦୃଷ୍ଟିଭଙ୍ଗୀରେ ଏକ ଅଭିବ୍ୟକ୍ତି ମାତ୍ର । ତାତ୍କାଳୀନ ସାହିତ୍ୟରେ ପୁରାଣ ଓ ରୀତି ଯୁଗୀୟ ଗ୍ରନ୍ଥ ମାନଙ୍କରେ ବର୍ଣ୍ଣିତ ବଂଶାବଳୀ ଓ ମହାପୁରୁଷମାନଙ୍କ ଜୀବନରେ କେତେକ ଉପାଦେୟ ଶିକ୍ଷଣୀୟ କାହାଣୀ ତଥା ମଧ୍ୟଯୁଗୀୟ ସାମନ୍ତ ପରିବାରର ରୀତିନୀତି, ଆଚାର ବ୍ୟବହାର, ରଙ୍ଗ ଢଙ୍ଗ, ବିଳାସ ବ୍ୟସନ, ଚାଲିଚଳନ, ପୂଜା ପାର୍ବଣ, ଗର୍ବ ଅଭିମାନ ଜୟ ବିଜୟର ଅତିରଞ୍ଜିତ ବର୍ଣ୍ଣନା, ଭାବ, ଭାଷା, ଶୈଳୀ, ଛନ୍ଦ, ଅଳଙ୍କାର ପ୍ରଭୃତି ପରିବେଷିତ ହୋଇ ଜନସମାଜରେ ପ୍ରଚାରିତ ହୋଇଥିଲା । କିନ୍ତୁ ଆଧୁନିକ ଧର୍ମୀ ପାଶ୍ଚାତ୍ୟ ସାହିତ୍ୟାନୁରାଗୀ ଜନସମାଜ ପକ୍ଷରେ ତାହା ସର୍ବାନ୍ତଃକରଣରେ ଗ୍ରହଣ କରି-ନେବା ଆଦୌ ସମ୍ଭବ ନ ଥିଲା । ବିଶେଷତଃ ପଡ଼ୋଶୀ ବଙ୍ଗଳା ସାହିତ୍ୟ ଯେତେ-ବେଳେ ପାଶ୍ଚାତ୍ୟ ଶିକ୍ଷା ଓ ସାହିତ୍ୟର ଅନୁକରଣରେ ନିଜ ଭାଷା ଓ ସାହିତ୍ୟକୁ ସମୃଦ୍ଧ କରିବାରେ ଅଗ୍ରସର ହୋଇ, ଭାରତୀୟ ଜନସମାଜରେ ବିଶେଷ ଆଦୃତ ହେବା ସଙ୍ଗେ ସଙ୍ଗେ, ଉନ୍ନତ ସାହିତ୍ୟର ପଦବୀ ଧାରଣ କରିବାରେ ସମର୍ଥ ହୋଇଥିଲା । ସେତେ-ବେଳେ ଓଡ଼ିଆ ସାହିତ୍ୟ ସେହି ରୀତି ଯୁଗୀୟ ଅନ୍ତଃପୁରଚାରିଣୀ ନାୟିକାର ରୂପବୈଭବ ଓ ଆପାଦମସ୍ତକ ଯୌବନ ବର୍ଣ୍ଣନା ତଥା ଚନ୍ଦ୍ର, ସୂର୍ଯ୍ୟ, ତାରା, ଷଡ଼ୃତୁ, ନଦୀ, ପର୍ବତ, ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ, ବର୍ଷା ମୁଖର ଓ ନିର୍ମଳ ଚନ୍ଦ୍ରମଣ୍ଡଳ ସମନ୍ୱିତ ରାତି ଓ ସଂସ୍କୃତ ରସଶାସ୍ତ୍ର ସମର୍ଥିତ ନାୟକ ନାୟିକାଙ୍କର ବହୁବିଧ ଶୃଙ୍ଗାର ବର୍ଣ୍ଣନାରେ ନିମଗ୍ନ ରହି ଗୌରବାନ୍ୱିତ ହେବାରେ ଆତ୍ମ ପ୍ରସାଦ ଅନୁଭବ କରୁଥାଏ । ତେଣୁ ପଡ଼ୋଶୀ ପ୍ରାନ୍ତୀୟ ସାହିତ୍ୟର ନବୀନ ଅଙ୍ଗସଜ୍ଜାରେ ପ୍ରଲୁବ୍ଧ ହୋଇ ଓଡ଼ିଆ ସାହିତ୍ୟ ମଧ୍ୟ ପାଶ୍ଚାତ୍ୟ ସାହିତ୍ୟ ତଥା ପାଶ୍ଚାତ୍ୟ ଭାବଭଙ୍ଗୀରେ ପୁଷ୍ଟ ବଙ୍ଗଳା ସାହିତ୍ୟର ଅନୁକରଣ ଓ ଅନୁସରଣରେ ନିଜର ପ୍ରାଚୀନ ରୀତି ଅଳଙ୍କାରକୁ ପରିବର୍ଜନ କରି ଆଧୁନିକ ଭାବ, ଭାଷା, ଶୈଳୀ ଓ ଅଳଙ୍କାର ଦ୍ୱାରା କାବ୍ୟ ନାୟିକାର ସଜ୍ଜୀକରଣରେ ବ୍ରତୀ ହେଲା । ସେହି ପରିବର୍ତ୍ତନକୁ ସମାଲୋଚକ ଡ଼ଃ ସାମନ୍ତରାୟ ଭିନ୍ନ ଦୃଷ୍ଟିରେ ଅଭିବ୍ୟକ୍ତ କରିବାକୁ ଯାଇ କହିଛନ୍ତି— "ଆଧୁନିକ ସାହିତ୍ୟ ବୋଲି ଆମେ ଆଜି ଯେଉଁ ସାହିତ୍ୟକୁ ବୁଝୁ, ତାହା ପ୍ରାଚ୍ୟ-ପାଶ୍ଚାତ୍ୟ ଶିକ୍ଷା-ସଭ୍ୟତା-ସଂଘର୍ଷର ଏକ ଅମୃତମୟ ଫଳ ବ୍ୟତୀତ ଅନ୍ୟ କିଛି ନୁହେ । ଏ ସାହିତ୍ୟ ପ୍ରାଚ୍ୟ-ପାଶ୍ଚାତ୍ୟ ଚିନ୍ତା ସମନ୍ୱୟର ଏକ କଳାଗତ ପରିପ୍ରକାଶ ମାତ୍ର ।"*

---

* 'ଓଡ଼ିଆ ସାହିତ୍ୟର ଇତିହାସ' —ପୃ ୨୫୧

१३- ଭରଥ ବୋଲ ବାଣୀ, १४- ଗୀତା ଦୁଖଅ ଅଧା ବାଣୀ, १५- କାଳୀ, १६- ଗଡ଼ ମାଳଆ ବୃତ୍ତେ, १७-କାମୋଘ, १८- ଘମକେଶ, १९- ବୋଲବାଣୀ २०- ଭରିଆଘ, २१- ଆହ୍ୱାଘ, २२- ମୁଖାଘ, २३- କୁମ୍ଭ କାମୋଘ, २४- ଚନ୍ଦ୍ରାକେଦାର, २५- ସିନ୍ଧୁ, २६- ନରଶୀଗଉଡ଼ା, २७- କଉଶିକ, २८- ଯଶୋବନ୍ତ ଦାସଙ୍କ ଫଗୁ ଘହାସ ବୃତ୍ତେ ।

No Colophon.

## 21

Cat. No. O.L./364—A

ଛାନ୍ଦ ଭରତ (ଆରଣ୍ୟକ ପର୍ବ)

By—କେଶବ ଶ୍ରୀଚନ୍ଦନ

**Chhānda Bhārata** (Āraṇyaka Parva)

Keśava Śrīchandana

Substance—Palmleaf. No. of folia—136 Size— 34.1× 3.2 C.M. Each side contains 3 to 4 lines. Character—Oriya. Date of copy — Sana 1323 Sāla or 1916 A. D. Complete. Condition—Badly Wormeaten. Findspot—Bhubaneswar, Dist. Puri Name of the scribe—Chakradhar Saṁgīta Rāya.

ଅର୍ଜ୍ଜୁନ ବୋଲନ୍ତି ଶୁଣ ହେ ବୀର ।
ଶସ୍ତ୍ର ଅଛୁ ଶମୀ ବୃକ୍ଷ କୋଟର ।
କୋବନ୍ଧ ରୂପେ ଡ଼ାଳେ ଲଗିଥିବ ।
ପରଲୋକ ଦେଖି ଉତ୍ତେ ଦେବ ସେ ॥
• ପ୍ରଚଣ୍ଡ ବଳ ହରଷ ଯେ,
ଅଦଉଡ଼ ବନ୍ଧନେ ଡ଼ାଳେ ଲଗିଲେ କବନ୍ଧ ରୂପ ପ୍ରକାଶ ଯେ ।

ଅନ୍ତ ଉର୍ଦ୍ଧ୍ୱ କର ଢେଙ୍କ ରଙ୍ଗ
ଶୁଣି ଯୁଜେଷ୍ଟି ମୋହେ ଚଳେ ପଣ୍ଡ ॥
ଅର୍ଜ୍ଜୁନ ଡାକେ ନ କର ଶବଦ ।
ଶୁଣି କବନ୍ଧ ହେଲା ନଟବେଦ ଯେ ॥
ଯୁଜେଷ୍ଟି ବ୍ୟଥା ପାଇଲେ ଯେ,
ତାର ଥିଲେ ଶସ୍ତ୍ର କେହ୍ନୁ ନେଇପାରେ ବୋଲିଣ ପ୍ରଶଂସା କଲେ ଯେ ॥

ଯୁଜେଷ୍ଟିଙ୍କି କହନ୍ତ୍ର ପୀତବାସ ।
ଏଠାକୁ ସାତକୋଶ ମଧ୍ୟ ଦେଶ ॥
ବସନ୍ତ ନାମେ ତହିଁରେ ସ୍ରଜନ ।
ସେ ନଗ୍ରେ ତୁମ୍ଭେ ହୋଇବ ଗୋପ୍ୟା ଯେ ।
ଆନ ଆନ ନାମ ବହ୍ନି ଯେ,
ବ୍ୟାସେ ଦ୍ରୁପତିଙ୍କି ଏକାନ୍ତେ କହ୍ନିଲେ ରହ୍ନିବେ ଶ୍ରୀକୃଷ୍ଣ ତହିଁ ଯେ ।

କହ୍ନିଣ ବ୍ୟାସେ ଅନ୍ତର ହୋଇଲେ ।
ଶ୍ରୀକୃଷ୍ଣ ତାଙ୍କୁ ବହ୍ନୁ ପ୍ରବୋଧିଲେ ॥
ଯୁଜେଷ୍ଟି ପାଦେ ଦରଶନ କରି ।
ମେଲାଣି ତହୁଂ ହୋଇଲେ ଶ୍ରୀହରି ସେ ॥
ଖଗେଶ୍ୱରେ ବଜେ କଲେ ହେ ।
ହ୍ବରି ପାଣ୍ଡବଙ୍କୁ କଲ୍ୟାଣ କରଣ ଦ୍ୱାରକା ପୁରେ ମିଳିଲେ ଯେ ।

ଆସି ବୃକ୍ଷ ତଳେ ପଞ୍ଚ ପାଣ୍ଡବେ ।
ଦ୍ରୁପତିଙ୍କି ଘେନ ଆନନ୍ଦ ଭାବେ ॥
ବସିଣ ତହିଁ କରନ୍ତ ବଗ୍ଭର ।
ଶ୍ରୀକୃଷ୍ଣ ପାଦ ଚିନ୍ତ ନିରନ୍ତର ଯେ ।
ଗାନ ବିଶ୍ୱମ୍ଭର ଦାସ ଯେ ।
ଅଚ୍ୟୁତ୍ତ ପାଦପଦ୍ମ ଭରସାରେ ବନ ପର୍ବକଲି ଶେଷ ଯେ । ✓

Colophon— ସନ ୧୩୨୩ ସାଲ କାର୍ତ୍ତିକ ୫ ଦିନ ଏହି ପୁସ୍ତକ ସମ୍ପୂର୍ଣ୍ଣ । ଲେଖକ ଶ୍ରୀ ଚକ୍ରଧର ସଙ୍ଗୀତାଙ୍କର । ଏହି ପୁସ୍ତକ ଯେ ମାଗିନେଇ ନ ଦେବ, ତା' ସପ୍ତପୁରୁଷ କୁମ୍ଭୀପାକକୁ ଯିବେ ।

In some chapters, the name of Keśava Śrichandana has been mentioned as the author of the work. But at other places the name of Viśvambhara is also found.

The following metres and Vānis have been used in the different chapters of the work.

ଗୀତା ବୈରାଗ୍ୟ ଅଧା ବାଣୀରେ, ସଦୁବୋଲ ବାଣୀ, କଲ୍ୟାଣ ଆହାରୀ, ଚନ୍ଦ୍ରାଭୈରବ, ବରାଡ଼ି, କାଳୀ, ଭାରତ ବୋଲ ବାଣୀରେ, ପାହାଡ଼ିଆ କେଦାର, କଉଶିକ, କନଡ଼ା ।

No Colophon

22

Cat. No. O. L./364—B

ଛାନ୍ଦ ଭାରତ (ବରାଟ ପର୍ବ)

By—କେଶବ ଶ୍ରୀଚନ୍ଦନ

**Chhānda Bhārata** (Virāta Parva)

Keśava Śrichandana

Substance—Palmleaf. No. of folia—36. Size—34.1× 3.2 C.M. Each side contains 5 to 6 lines. Character—Oriya. Date of copy—Sana 1323 Sāla or 1916 A. D. Incomplete. Condition—Badly worm eaten. Find spot—Bhubaneswar, Dist. Puri. Name of the scribe—Chakradhar Sangitarāya.

Beginning—

ଶ୍ରୀ ଛାନ୍ଦ ଭାରତ
ବରାଟ ପର୍ବ
ପ୍ରଥମ ଛାନ୍ଦ ଲେଖା

ଶ୍ରୀ ବଳଭଦ୍ରାୟ ନମଃ ॥

ରାଗ — ଚକ୍ରା ଦେଶାକ୍ଷ

ଏ ଛାନ୍ଦ — ଅବନା

ଜୟ ଅମଳ କମଳ ଦଳ ନୟନ ।
ଜୟ ଜୟ ଅନନ୍ତ ଅନନ୍ତ ଶୟନ ॥
ଜୟ ଜଗତ ଜନ ମନରଞ୍ଜନ ।
ଜୟ ଜୟ ସଙ୍କଟ ଶକଟ ଭଞ୍ଜନ ॥
ଜୟ ଜୟ ଭଗତ ହୃଦୟ ଚନ୍ଦନ ।
କଂସର ବଂଶ ଧ୍ୱଂସନ ନନ୍ଦ ନନ୍ଦନ ॥

× × ×

ପଶାଖେଳେ ନୃପ ମନ ରଞ୍ଜିଲେ ।
ଧ୍ୟାନ **କେଶବ** ଶ୍ରୀକୃଷ୍ଣ ଭଜିଲେ ॥
ବିରାଟ ପର୍ବ ଏହୁ ଦିଶିୟ ଛାନ୍ଦ ।
ନବାହ୍ନ ଷଷ୍ଠ ପଞ୍ଚାଶତ ପଦ ॥

× × ×

**କେଶବ** କହି ଛାନ୍ଦ ସରଇ ।
ଏକଷଠୀ ପଦ ଅଟଇ ଏହି ॥

× × ×

ମଣ୍ଡିତ ସେଠାରେ ସେ ରହିଲେ ସହଦେବ
ଜୟ ଚତ୍ୱାଂରଶ ପଦେ ସାରିଲେ କେଶବ ହେ ।

× × ×

ଶମୀ ବୃକ୍ଷର ଯେତେ ଚରିତ ।
ପାର୍ଥ ତହୁଂ ପୁଚ୍ଛି ସମସ୍ତ ଜାଣିଲି ବିରାଟ ନୃପର ସୁତ ।
ନପୁଂସକ ଅଙ୍ଗ ହୋଅନ୍ତେ ଜାତ
ମାତଲୀ ହୋଇଲେ ଉପଗତ ।
**କେଶବ କବି ଏକ ଚତ୍ୱାରି ପଦେ ଛାନ୍ଦ କଲେ ସମାପତ ।**

No Colophon.

## 23

Cat. No. O.L./365—A

### ଛାନ୍ଦ ଭାରତ (ଉଦ୍ୟୋଗ ପର୍ବ)

By—କେଶବ ଶ୍ରୀଚନ୍ଦନ

**Chhānda Bhārata** (Udyoga parva)

Keśava Śrīchandana

Substance—Palmleaf. No. of folia—57. Size— 33.8× 3 C.M. Each side contains 5 lines through out the manuscript. Character—Oriya. Date of copy—Sana 1323Sāla or 1921 A.D. Complete. Condition—Wormeaten. Find spot—Bhubaneswar, Dist. Puri Name of the scribe—Chakradhara Saṁgīta Rāya.

**Beginning—**

ଶ୍ରୀ ଭାରତ, ଉଦ୍‌ଯୋଗ ପର୍ବ ପ୍ରଥମ ଛାନ୍ଦ

ଶ୍ରୀ ଗଣେଶାୟ ନମଃ

ରାଗ — ସଙ୍ଗମ ତଆରି

ବନ୍ଦଇ ଜଗମୋହନ ପଦ ପଲ୍ଲବ ।
ବନ୍ଦନ୍ତି ଯେହ୍ନୁ ସକଳ ସୁର ମାନବ ।।
ବରଷା ରସ ଶୋଭାରେ ମାରସ ହେବ ।
ବର୍ଣ୍ଣିତ ଯେ ଅଷ୍ଟାଦଶ ଛନ୍ଦେ ସ୍ୱଭାବ ।।
ବଳ ଦଳ ହେଲେ ଯେହ୍ନୁ ତ୍ରୁଟିତ ଭବ ।
ବ୍ରହ୍ମା ଧଉତ ନବର୍ତ୍ତେ ନବାର ଠାବ ।।
ବ୍ରହ୍ମାଣ୍ଡ ଭାଣ୍ଡେ ବାଜିଲ ଭେଦ ନ ହେବ ।
ବହିଲ କାରୁଣ୍ୟ ଜଳ ଦେଖିଲେ ସର୍ବ ।।

× × ×

ବନ୍ଧୁଙ୍କ ଭବରେ ମୁନି କହନ୍ତି ସର୍ବ ।
ବଦଇ ସ୍ୱେ ଛନ୍ଦ ନଂଶ ପଦେ କେଶବ ।।

× × ×

End— ପଣ୍ଡୁସୁତ ଯେ ରୂପେ ଘେନି, ଦଶଦିନ ହୋଇଲା ନାଶ ।
ଯୁଦ୍ଧ ଆରମ୍ଭ ହେବ ପ୍ରାତଃକାଳରୁ ଉଦ୍‌ଯୋଗ ପର୍ବ ଶେଷ ।
ଶୁଣ ସୁଜନେ ସୁଜନ, ଷୋଡ଼ଶ ପର୍ବ ସମ୍ପୂର୍ଣ୍ଣ ।
ଗାଙ୍ଗେୟ ଗୁରୁପର୍ବ ବର୍ଣ୍ଣ ହୋଇବ ଦୟାକଲେ ଭଗବାନ ।
ଯେ ପର୍ବ ଯେତେକ ବଂଶତ, ଛାନ୍ଦ ହେଲା ସମାପତ ।
ଯେ ଛାନ୍ଦ ପଞ୍ଚାଶତ ପଦେ ଆନନ୍ଦେ ଶିର ଚନ୍ଦନ ବଦନ୍ତ ।
ଏ ଯେତେକ ବଂଶତ ଛାନ୍ଦ ଜାଣ ଅଷ୍ଟଶତ ପଦ ।
ଅଧିକେ ପଞ୍ଚଶତେ ବର୍ଣ୍ଣା ହୋଇଲା, ସାଧୁଜନେ ନନ୍ଦେ ବଦ ।

ଉଦ୍‌ଯୋଗ ପର୍ବ ଯେତେକ ବଂଶତ ଛାନ୍ଦକୁ ଆଠଶ ପଞ୍ଚାଶ ପଦରେ ସମ୍ପୂର୍ଣ୍ଣ ହୋଇଲା ।

Metres and Vānis used in the Kāvya—

ସଙ୍ଗମତଆର ବାଣୀ, କଲ୍ୟାଣ ଗୈଖି, ସିନ୍ଧୁଡ଼ା, ମୁନିବର ବାଣୀ, ଆଶାବରୀ, କୁମ୍ଭକାମୋଦୀ, ଆହାରୀ, ଭରତ ବୋଲ ବାଣୀ, ବରାଡ଼ି, କାଫି, ବଙ୍ଗାଳଶ୍ରୀ, ଭଟିଆରୀ, ପଦୁବୋଲ ବାଣୀ, କେଦାର କାମୋଦୀ, କେଦାର (ଗଡ଼ମାଳିଆ ବୃତ୍ତେ) ଇତ୍ୟାଦି ।

No Colophon.

**24**

Cat. No. O.L. / 1252

ଛାନ୍ଦ ଭାରତ

(ଉଦ୍ୟୋଗ, ଭୀଷ୍ମ, ଦ୍ରୋଣ ପର୍ବ)

By—କପିଳେଶ୍ୱର ନନ୍ଦ

**Chhānda Bhārata**
(Udyoga, Bhīṣma & Droṇa Parva)
Kapileśvara Nanda

Substance—Palmleaf No. of folia—240. Size—35·5 × 3 C.M. Each side contains 4 to 5 lines. Character — Oriya. Date of copy—C. 19th century A.D. Incomplete. Condition—Wormeaten. Findspot — Bhubaneswar, Dist— Puri.

ପ୍ରଥମ ଛାନ୍ଦ । କଳସା ବାଣୀ ॥

ଜୟ ଜୟ ସଦାଶିବ ଗିରିଜା ବିଳାସ ।
ଜୟ ତ୍ରିନେତ୍ର ରବି ଶଶାଙ୍କ ହୁତାଶ ॥
କର ଅନୁଗ୍ରହ ଦେବ ଚନ୍ଦ୍ରେ ବଳୁରଇଁ ।
ଉଦ୍ୟୋଗ ପର୍ବକୁ ଛାନ୍ଦରେ କହିବଇଁ ॥
ପିତା ମାତା ଗୁରୁ ପାଦେ କରେ ନମସ୍କାର ।
ସେମାନଙ୍କ କରୁଣାରେ ବିଘ୍ନ ହେବ ଦୂର ॥
ଆହେ ସାଧୁଜନେ ତୁମ୍ଭପାଦେ ମୁଁ ଶରଣ ।
କର ସୁକଲ୍ୟାଣ ହେଉ ମୋ ବାଞ୍ଛା ପୂରଣ ॥

× × ×

ମୁଁ ମୂଢ଼ ମନ୍ଦମତି କରି ସାହାସ ଅତି ମାତିଛି ଏ ରଚନେ ଯେ ।
ଇଷ୍ଟଦେବ, କରିବେ ବାଞ୍ଛା ପୂର୍ଣ୍ଣ ଯେ ।
କହେ **କପିଳେଶ୍ୱର** ସୁଜନେ ତୁମ୍ଭର ଶରଣ ସଦା ନେଇନ ଯେ ॥

× × ×

ଶ୍ରୀଶଙ୍କର ପାଦେ ଚିନ୍ତି ଅପ୍ରମାଦେ ଏ ଭାରତ ଛାନ୍ଦ କରିବାରେ
କରିଛି ସାହାସ କହେ **କପିଳେଶ** ଶିବ ମୋ ସନ୍ତାପ ଖଣ୍ଡିବାରେ ॥

× × ×

No Colophon.

25

Cat. No. O.L./365—B

ଛାନ୍ଦ ଭାରତ (ଭୀଷ୍ମ ପର୍ବ)

By—କେଶବ ଶ୍ରୀଚନ୍ଦନ

**Chhānda Bhārata** (Bhiṣma Parva)

Keśava Śrīchandana

Substance—Palmleaf. No. of folia—49. Size—33.8 × 3 C. M. Each side contains five lines throughout the manus-

cript Character — Oriya. Date of copy — Sana 1328 sāla or 1921 A. D. Complete Condition — Badly wormeaten. Findspot — Bhubaneswar, Dist. Puri. Name of the scribe—Chakradhara Sangītarāya.

Beginning— ଖିଷ୍ଟୁ ପର୍ବ, ପ୍ରଥମ ଛନ୍ଦ ଲେଖନ ।

କଳଶା ବାଣୀରେ

ହରିହର ସ୍ତୁତି

ଜୟ ଜୟ ବୃଷପାଳ ହରିତ ଅମ୍ବର ।
ପୁରାଣ ପୁରୁଷ ସର୍ବ ଭୂତରେ ବେହାର ॥

ଅର୍ଜୁନ ବରନ ଧର ଭବ ତାପ ହର ।
ପୁଣ୍ୟଜନ ବରପ୍ରଦ ··· ଶିବ ଭକ୍ତର ॥

ସୁମନେ ଶ୍ରେଷ୍ଠ ସୁମନ ଭଜନରେ ବଶ ।
କମଳ ଧର ସମାନ କାନ୍ତି ଭବଙ୍କଶ ॥

ଭାର୍ଗବୀ ଉଦୟ ସର୍ପ ଭୂଷଣ ଅନନ୍ତ ।
ଭାରଖରେ ବର୍ତ୍ତିମାୟ ନୁହଇ ଚରିତ ॥

କମଳ ସମ୍ଭବ ଭବ ବନ୍ଦିତ ଚରଣ ।
ଅନ୍ଧହର ପବନ ପବନ ନାମ ଗଣ ॥

ବଧୂଧର ଧର ଜାମାତା କ୍ଷୀରନଧିର ।
ବସ୍ତୁ ସିକତା ଗଣାଯିବ ଗୁଣ ଅପାର ॥

ତ୍ରିପୁର ବର୍ଦ୍ଧନ କର କର୍ଦ୍ଦନ ମଥନ ।
ଗଜ ଗଜ ସଖା ଭବ ଖ୍ୟାମ ପଞ୍ଚାନନ ॥

End— ହେ ସୁଗମ୍ୟ ନର, ମୋର ଦୋଷ ନ ଧର ।
ଛନ୍ଦ କରି କଲି ମୁସେ ଭାରତ ଚିର ॥

× × ×

ଏଥୁ ପର୍ବ ସପ୍ତଦଶ ଛାନ୍ଦେ ସମାପ୍ତ ।
ଷଷ୍ଟ ଷାଠିଏଥୁ ପଦ ହେଲେ...... ॥
ଏଥୁ ଶେଷ ଛାନ୍ଦ, ଚତ୍ୱାରିଂଶ ପଦ,
ସୁଜନେ ଶ୍ରବଣେ ଶୁଣି ବଦନେ ବଦ ॥

**Colophon**—ଯାମସ୍ୟାପି............ନ ବିଦ୍ୟତେ ।

ଏଥୁ ପୁସ୍ତକ ସଦା ଜଏଥୁ ସମ୍ପୂର୍ଣ୍ଣ, ହେ ସୁଗ୍ୟଜନମାନେ, ଶୁଦ୍ଧ ଅଶୁଦ୍ଧ ସୁଧେଇ ଗାଇବ । ଲେଖନକାର ଦୋଷ ନ ଧରିବ । ଶୁଭମସ୍ତୁ । ଏଥୁ ପୁସ୍ତକ ସନ ୧୩୨୮ ସାଲ କନ୍ୟ ୨୯ ଦିନ, ଘଡ଼ି ୮ ଘଣ୍ଟା ସମୟରେ ସମ୍ପୂର୍ଣ୍ଣ । ଉତ୍ତର ବାଡ଼ ମହାସୁଆର ଶ୍ରୀ ଚନ୍ଦ୍ରଧର ସଙ୍ଗୀତସ ।

**Metres and Vānis**—

କଳସାବାଣୀ, କଲ୍ୟାଣ, ମୁଖାରି, ବଙ୍ଗାଳଶ୍ରୀ, କେଦାର (ଚନ୍ଦ୍ରକେଳୀ ବାଣୀ) ଆହାରି (ପଦ୍ମପଟ), ଭରତ ବୋଲି ବାଣୀ, ଦକ୍ଷିଣ କାମୋଦୀ, ରସ କୋଇଲି ବାଣୀ, କିଶୁପା ବୃକ୍ଷର ଡାଳେ ବାଣୀ, ଚକ୍ରା, ପାହାଡ଼ିଆ କେଦାର, ଛୋଡ଼ ମୁଖାରି, କାଫି, ଯଦୁବୋଲି ବାଣୀ, ଆହାରି ।

**26**

**Cat. No. O L /363–B**

ଛାନ୍ଦ ଭାରତ (କର୍ଣ୍ଣ ପର୍ବ)

By—କେଶବ ଶ୍ରୀଚନ୍ଦନ

**Chhānda Bhārata** (Karṇṇa Parva)

Keśava Śrīchandana.

Substance — Palmleaf. No. of folia — 43 Size — 37.9×3 5 C M. Each side contains 4 to 6 lines. Character—Oriya. Date of copy — 15th regnal year or Aṁka year of Gajapati Rāmachandra Deva III of Khurdha dynasty. Complete. Condition—Worm eaten. Findspot—Bhubaneswar, Dist. Puri.

Beginning—ମହାଭାରତ, କର୍ଣ୍ଣ ପର୍ବ, ପ୍ରଥମ ଛାନ୍ଦ । ଶ୍ରୀ ଗଣେଶାୟ ନମଃ । ଅବିଘ୍ନ ମସ୍ତୁ । ରାଗ—କେଦାର ଚକ୍ରକେଳୀ ବାଣୀରେ । ଶୃଙ୍ଖଳାବନ୍ଧ ସୂତ୍ର ।

ଜୟ ପୁଞ୍ଜ ଘନ ମାନସ ଚୃତ୍ର ।
ଚୃତ୍ର ବଦନ ବନ୍ଦ୍ୟ ଦେବ ହର ॥

ହରଣାନ୍ତକ ଶେଖର ପୂଜ୍ୟଦେବ ।
ଦେବକୀ ଦେବୀ ଉଦର ଉଦ୍‌ଭବ ॥

ଭବ ସନ୍ତତ କାପ୍ରେକ ତାରଣ ।
ରଣ ରଙ୍ଗେ ତାତ ଲୋକପ୍ରାଣ ॥

ପ୍ରାଣେପ୍ସିତ ଯାତନା ଭୟ ହର ।
ହର ପ୍ରିୟ କ୍ଷୀର ସିନ୍ଧୁଜା ବର ॥

ବର ଭଦ୍ର ଗୋବିନ୍ଦ ବାସୁଦେବ ।
ଦେବରାଜ ଅନୁଜ ରମାଧବ ॥

ଧବଳାଙ୍ଗୀଧବ ଯାର ସେବକ ।
ବକ ଧ୍ୱଂସୀ ଅଘ ତୃଣ ପାବକ ॥

ବକପୁଷ୍ପପ୍ରିୟ ତାପ ନାଶନ ॥
ସନକାଦି ଧ୍ୟାନେ ଗମ୍ୟ ନିଦାନ ॥

**End—**

ବୈଶମ୍ପାୟନଙ୍କ ଗିର, ଜନ୍ମେଜୟ ଶୁଣିମାର,
ପୁରାଣେ ଶୁଣି ମୋହୋର ବଳିଲା ମନ ।
ଭାଷା ବନ୍ଧେ କଲି ଛାନ୍ଦ, ଚିନ୍ତି କୃଷ୍ଣ ପଦ୍ମପାଦ,
ଦୟା କଲେ ରାଧା-ହୃଦ-ହରିଚନ୍ଦନ ।
ସୁଜନେ ମୋହୋର ନିବେଦନ,
ଶୁଣ ଯେତେ ଯାଗ ଧର୍ମ ହୋଇବ ନିଦାନ ।

ମୋହେ ଭଷା ବୋଲି ହେଲା ନ କରହେ କୃଷ୍ଣଲୀଳା
ଭବସାଗରକୁ ଭେଳା ସେହୁ ଚରିତ ।
ଅମୃତ ପୂରିତ ରସ କର୍ଣ୍ଣ ମୁଖେ କର ଗ୍ରାସ,
ଚରଇ କେଶବ ଦାସ କମଳାକାନ୍ତ ।
ଯେ ଛାନ୍ଦ ସପ୍ତବିଂଶ ପଦ,
ସେଗାର ଷଷ୍ଠବିଂଶତି ପଞ୍ଚଶ ଛାନ୍ଦ ॥

କର୍ଣ୍ଣପର୍ବ ପଞ୍ଚବିଂଶ ଛାନ୍ଦକୁ ଯେଗାରଶ ଛବଶ ପଦରେ ସମ୍ପୂର୍ଣ୍ଣ ।

Colophon— ଶ୍ରୀ ଲିଙ୍ଗରଜ ଗୋପାଳଙ୍କ ଉଦ୍ଧାର କରିବେ ।

Metres and Vānis—

କେଦାର, ମୁଖାରି, ଦେଶାକ୍ଷ, ଭରଥ ବୋଲି, ଘଟିଆରି, କାମୋଦୀ, ବରାଡ଼ି, ଆହାରି, ରସକୋଇଲି ବାଣୀ, ରାଗ ଶିଶୁପାଳବଧରୁ ଜାଳେ, ଶ୍ରୀକୃଷ୍ଣ ବିଜୟେ ମଥୁରା ଦାଣ୍ଡେ, ମୁଖାବରି, ରାମକେରି, ଗଡ଼ମାଳିଆ ବାଣୀ, ସଦୁ ବୋଲି ବାଣୀ, ଭଗବତ ବୃତ୍ତେ, କାଫି, ଚୋଖୀ ଇତ୍ୟାଦି ।

27

Cat. No. O. L /1065—A

ଛାନ୍ଦ ଭାରତ (କର୍ଣ୍ଣ ପର୍ବ)

By— କେଶବ ଶ୍ରୀଚନ୍ଦନ

**Chhānda Bhārata** (Karṇṇa Parva)

**Keśava Śrichandana**

Substance — Palmleaf. No. of folia — 66 Size — 35.7×3 4 C.M. Each side contains 4 lines through out the manuscript. Character—Oriya. Date of copy — C. 19th

century A. D. Complete. Condition—Good. Find spot—Presented by Śrī Bhāgirathi Saṅgītarāy, Bhubaneswar-2, Dist. Puri.

Text same as in Cat No. O.L /366 (a)

No Colophon

28

Cat. No. O. L /366—B

ଛାନ୍ଦ ଭାରତ (ଶଲ୍ୟ ପର୍ବ)

By—କେଶବ ଶ୍ରୀଚନ୍ଦନ

**Chhānda Bhārata (Sālya Parva)**

Kesava Śrichandana

Substance—Palmleaf. No. of folia—22. Size—37,9 × 3. 5. C. M. Each side contains 3 to 6 lines. Character—Oriya. Date of copy—15th regnal year or Aṁka year of Gajapati Rāmachandra Deva III of Khurda Dynasty. Complete. Condition—Worm eaten. Find spot—Bhubaneswar, Dist, Puri.

**Beginning—**

ଶ୍ରୀ ମହାଭାରଥ (ଶଲ୍ୟ ପର୍ବ)

ପ୍ରଥମ ଛାନ୍ଦ

ଶ୍ରୀ ଗଣେଶାୟ ନମଃ । ଅବଘ୍ନ ମସ୍ତୁ

ରାଗ — ବଙ୍ଗାଳଶ୍ରୀ

ଜୟ ଜଗନ୍ନାଥ ଅମରବର ପାର୍ଥ ସାରଥିର ଭୟ ହରି
ବହନ୍ତି ମାଣ୍ଡବ୍ୟ ବରନ ହର ଦରଶନେ ଅଘ ନର ।

ନରକ ହର ହର ପର ଜନକ ପୀତ ଅମ୍ବର ।
ବରଜ ବଧୂ ବଦନ ସରସୀଜ ମଧୁକର ଦୟାକର ॥
କଷ୍ଟ ଦୁଃଖହର ଧରଜାର ବର ବନ୍ଦିତ ବ୍ରଜକୁମର ।
ମରଣ ଦୁଃଖ ହରଣ ଅସରଣ ଦୀନଜନଙ୍କ ସୋଦର ॥
ଏ ରୂପେ କୃଷ୍ଣ କହନ୍ତେ ଛାନ୍ଦ ଶେଷ ହୋଇ ।
ହେନ ଗୃଳଶ ପଦରେ **କେଶବ** କହଇ ॥

**End** — ଏ ରୂପେ ଭୀଷ୍ମ ପଡ଼ିଲା ବୀରବର ।
ଗଲେ ଯେ ଦୁହେଁ ଯେ ଯାହା ମନ୍ଦର ॥
ଶଲ୍ୟ ପର୍ବ ଶେଷ ହେଲା ଭୂବର ।
ଏଥୁ ଶଲ୍ୟ ପର୍ବରେ ଗଦା ପର୍ବର ॥
ବ୍ୟାସମୁନୀଶ୍ୱର
ଚରିତ କହି ଅଛନ୍ତି ଏଥିର ।
ଏଣୁ ନସାରି ଏହୁ ଶଲ୍ୟ ପର୍ବ ।
କହୁଅଛୁ ବୀରର ଗଦା ପର୍ବ ॥
ଯେବେଠି ଗଦାପର୍ବ ଉତ୍ପନ ହେବ ।
ଅଠର ପର୍ବରୁ ବଡ଼ ପଡ଼ିବ ॥
ଶଟ୍ଟକ ପରବ ।
ଏହୁ ଭାରତ ଅଟନ୍ତି ସ୍ୱଭାବ ॥
ଏଥିରେ ଅଠର ପର୍ବ ପ୍ରଶସ୍ତ ।
କଲି ଏ ରୂପେ ମୁ ଜାଣି ଏମନ୍ତ ॥
ସୁଗ୍ୟଂ ଜନେ ଏହା ଦେନ ସୁଚତ୍ତ ।
ସଞ୍ଜୟ କହନ୍ତି ଶୁଣ ଭୂନାଥ ॥
ମୁହୂର୍ତ୍ତେକ ମାତ୍ର,
ଭୂମି ବସା ଶୂନ୍ୟ ହେଲା ଭାଷିତ ।
ଏହୁ ଅନ୍ତେ ଶୁଣିବ ଗଦା ପରବ ।
ଯେ ରୂପେ ବଧାନ ହୋଇଲା ସର୍ବ ॥

ମନରେ ଚନ୍ତ୍ର ଶ୍ରୀ ଲକ୍ଷ୍ମୀ ମାଧବ ।
ଗୀତରେ କହୁଲେ କବ **କେଶବ ।**
ଯେମନ୍ତ ଗ୍ରନ୍ଥ ହେବ,
ବିଂଶତ ପଦ ହେ ସାଧୁ ମାଧବ ।।

The following rāgas and vānis have been used in the 'Salya Parva'—

ବଙ୍ଗଳଶ୍ରୀ, ଭଟିଆରୀ, ଆହାରୀ, ଭରତ ବୋଲ ବାଣୀ, କାଫି ମୂଖାରୀ, କୁମ୍ଭ କାମୋଦୀ, ଭଗବତ ବାଣୀ, ଦକ୍ଷିଣ କାମୋଦୀ, ରସକୋଇଲ ବାଣୀ, ଚକ୍ରା, କେଦାର, ବରାଡ଼ି ଇତ୍ୟାଦ ।

No Colophon

## 29

Cat.No. O. L./1065 (B)

ଛାନ୍ଦ ଭାରତ (ଶଲ୍ୟ ପର୍ବ)

By—କେଶବ ଶ୍ରୀଚନ୍ଦନ

**Chhānda Bhārata** (Śalya parva)

Keśava Śrīchandana

Substance — Palmleaf. No. of folia — 34. Other descriptions of text are same as in Cat. No. O. L./1065—A discussed previously.

No. Colophon

30

Cat. No. O.L./366-C

ଛାନ୍ଦ ଭାରତ (ଗଦା ପର୍ବ)

By—କେଶବ ଶ୍ରୀଚନ୍ଦନ

**Chhānda Bhārata (Gadā Parva)**

Keśava Srichandana

Substance—Palmleaf. No. of folia—11; Other descriptions are same as in Cat. No O. L./366—A,

Beginning— ଗଦା,ପର୍ବ ଲେଖନ

ରାଗ — ଆହାରି

ଗାନ୍ଧାରୀ ଧବ ବୋଲେ ଆହେ ସଂଜୀବ
କୃପ, କୃତବର୍ମା, ଦ୍ରୋଣି ମୋ କୁରୁଧବ
ଆକୁଳ ହୋଇ ଲୁଚିଲେ କେହୁ କାହିଁ
କହ ଗଦା ଯୁଦ୍ଧ ଆଜ ହୋଇଲା କେହିଁ ।
କହ କହେ ସଜୟ ପାଣ୍ଡବଙ୍କର ଜୟ
ଦେଖି ତ୍ରିନରଥୀ ଭୂମ୍ଭ ଲଭିଲେ ଭୟ
ମୋ ସଂଗେ କଥା ହୋଇ ଜାଣି ବାରତା
ପାଣ୍ଡବଙ୍କୁ ଦେଖି ଭାଷିଲେ ଲଭଣ ବ୍ୟଥା ।
ପାଣ୍ଡବେ ଚୋର ନାଣି ସଇନ୍ୟବାଉ
ଶବ ଖୋଜିଲେ ଦର୍ଯ୍ୟୋଧନ ନୃପତିଙ୍କର ।

× × ×

End— ଏହି କେବଳ ବାଞ୍ଛା ମୋର । ସୁଜନେ ମୋ ଦୋଷ ନ ଧର ।
ପଦ୍ମଲୋଚନ ନନ୍ଦନ । ଯାହାର ଅଟେ ସୂର୍ଯ୍ୟ ଗୋତ୍ର ।
କ୍ଷତ୍ରିୟ ବଧୂବତ ହୋଏ । ଲକ୍ଷ୍ମଣ ତାହାର ତନୟେ ।।

ତା ସୁତ ନରହର ଦାସ । ବହୁତ କୀର୍ତ୍ତି ତା ପ୍ରକାଶ ॥
ମନ୍ତ୍ରୀ ଅଷ୍ଟଦୁର୍ଗ ନୃପର । ଜାଣନ୍ତି ସକଳ ବଗୃର ॥
ସକଳେଶ୍ୱର ତାଙ୍କ ସୁତ । କରଣ କୁଳେ ହେଲେ ସ୍ଥିତ ॥
ପୁରୁଷୋତ୍ତମ ନାମେ ଧୀର । ହୋଇଲେ ତାହାଙ୍କ କୁମର ॥
ତାଙ୍କର ହେଲା ପଞ୍ଚ ସୁତ । ନେ୍ୟଷ୍ଠ କୃପାସିନ୍ଧୁ ବୃଦ୍ଧତ ॥
ତାଙ୍କ ପ୍ରଥ୍ମ କୁମର ମୁହିଂ । କେଶବ ନାମ ମୋ ଅଟଇ ॥
କରୁଣା କଲେ ରମାକାନ୍ତ । ଭାରତ କଲି ଛାନ୍ଦ ଗୀତ ॥
ଏ ଶଲ୍ୟ ପର୍ବ ବଂଶ ଛାନ୍ଦ । ଅଷ୍ଟାଶତ ଅଠାନ ପଦ ॥

Colophon — ଶ୍ରୀରାମ ଉଦ୍ଧାର କରିବେ ଅଧମ ପାନଜନମାନଙ୍କୁ ।

## 31

Cat. No. O. L./1065—C

### ଛାନ୍ଦ ଭାରତ (ଗଦା ପର୍ବ)

By — କେଶବ ଶ୍ରୀଚନ୍ଦନ

**Chhānda Bhārata** (Gadā Parva)

Keśava Śrichandana

Substance—Palmleaf. No. of folia—18. Other descriptions are same as in Cat. No. O. L./1065—A and text same as O. L./366 (C)

No Colophon.

32

Cat. No. O.L /366-D

ଛାନ୍ଦ ଭାରତ (ସୌପ୍ତିକ ପର୍ବ)

By—କେଶବ ଶ୍ରୀଚନ୍ଦନ

**Chhānda Bhārata** (Sauptika Parva)

Keśava Śrīchandana.

Substance — Palmleaf. No. of folia — 18 Other descriptions are same as in Cat. No. O L /366—A

**Beginning—**

ଛାନ୍ଦ ଭାରତ

ସୌପ୍ତିକ ପର୍ବ ଲେଖନ

ପ୍ରଥମ ଛାନ୍ଦ

ରାଗ — କେଦାର କାମୋଦୀ

ଜୟ ଜୟ ଯଶୋଦା ପ୍ରିୟ ନନ୍ଦନ
ଜୟ ରାଧା ହୃଦୟ ହରିଚନ୍ଦନ ।
ଯାମଳାର୍ଜ୍ଜୁନ ଭଞ୍ଜା ଦୀନ ସୋଦର
ଯମୁନା ତଟ ନଟ ଗୋପୀଙ୍କ ବର ଯେ ।
ଅଘ ଅଘ ତମସ ଭାସ୍କର
ବଲ୍ଲଭ ନାରୀ ହୃଦ ଧନ ତସ୍କର ଯେ ।
କଂସ କେଶୀ ନାଶନ କମଳ ମୁଖ
ବୃନ୍ଦାବନ ଗଗନ ଶୀତ ମୟୂଖ ଯେ ।

× × ×

କର କରୁଣା ଦେବ ମୋତେ କାଙ୍କ୍ଷିତ
ଛାନ୍ଦ କରି ବର୍ଣ୍ଣିବ ଭାରତ ଗୀତ ହେ ।

× × ×

**End—**

ସେ ଯେ ପୁରୁଷ ଉତ୍ତମ ମହାପାତ୍ର ଯାହା ନାମ
ତପନ ଗୋତ୍ର ତାଙ୍କ ତନେୟ ଲକ୍ଷ୍ମଣ ଦାସ ସେ ସୁଷମ ।
ପୁଣି ତାହାଙ୍କର ଶିଷ୍ୟ ନାମ ନରହର ଦାସ
ତାହାଙ୍କ ଦେହରେ ଦକ୍ଷଣ ଦିଗରେ ଆସି ହେଲେ ପରକାଶ
ଅଷ୍ଟଦୁର୍ଗ ମହାପତ୍ର ଜଗଦ୍ଦେବ ନାମ ଖ୍ୟାତ
କୁଳଶେଖର ନାମେ ପରକାଶ ତାହାଙ୍କର ମତ ।
ତାଙ୍କ କୁଳେ ନରହର ବଡ ହୋଇଲେ କୁମାର
ସକଳେଶ୍ୱର ନାମେ ପୁତ୍ର ପୁଣି ତହୁଂ ଅବତର ।
ଗଦାଧର ବେବରତା ତାହାଙ୍କର ସେ ଜାମାତା
ତାଙ୍କ ନନ୍ଦନ ପୁର ପଟ୍ଟନାୟକ ନାମେ ହେବେ ଖ୍ୟାତ ।
ତାଙ୍କ ଦେହରକ୍ଷୀଙ୍କର ଗ୍ରାମେ କଲେ ଯାଇ ଦାର
ଗଦାଇ ନନ୍ଦ ନାମେ ପଟ୍ଟନାଏକ ମାତୁଳ ତାଙ୍କର ।
ଓଡ଼ିଶା ଆଠ ଗଡ଼ର, ହଂସ ଦାସଙ୍କ ଅଂଶର
ସମନାଥ ନାମ ଜନକ କଣ୍ଠ ତା ପଟ୍ଟନାୟକଙ୍କର ।
ସେ ଯେ କୁମାରୀ ତାଙ୍କର, ବଡ ହେଲେ ସେହୁ ପୁର
ତହୁଂ ପଞ୍ଚପୁତ୍ର ଜନମ ଥୋକେ କଲେ ଗଡ଼ରେ ମନ୍ଦର ।
ଜ୍ୟେଷ୍ଠ କୃପାସିନ୍ଧୁ ହୋଇ ଯେହୁ ବଆନଙ୍କ ଜୁଆଇଂ
ତାଙ୍କ ନନ୍ଦନ କେଶବ କୃଷ୍ଣ ଆଶ୍ରେ କରି ବଡଇ ।
ଗଦାଧରଙ୍କ କୁମର କୃପାସିନ୍ଧୁ ନାମ ଯାର,
ତାଙ୍କ ନନ୍ଦମାନ ବଡ ହୋଇଲେ ଖ୍ୟାତ ନୋହିଲା କୁମର ।
ପୁଣି ଓଡ଼ିଶା ରାଜ୍ୟରେ ଭୂଷଣ୍ଡପୁର ଗ୍ରାମରେ
ରାଜାଙ୍କ ମୁଦ କରଣସ୍ଥିତ ଜାତ ତାହାଙ୍କ ଘରରେ ।
ପୀତାମ୍ବର ଅଧିକାରୀ ତାଙ୍କ କନେଷ୍ଟ କୁମାରୀ
ତାଙ୍କୁ ବଡ ହୋନ୍ତେ ଗଙ୍ଗାଧର ନାମେ ସୁତ ଅବତରି ।
ମୁ ଯେ ଗଙ୍ଗାଧର ତାତ କେଶବ ମୋ ନାମ ଖ୍ୟାତ
ସୁଗ୍ୟଂଜନ ଅର୍ଥେ ଆରମ୍ଭିଲି ମୁହି ଶ୍ରୀ ଛାନ୍ଦ ଭାରତ ।

କୃପା କଲେ ଜଗନ୍ନାଥ ଶେଷ ହେବ ସେହୁ ଗୀତ
ମୋର କି ଆଯୁତ ସୃଗ୍ୟଂଜନ ବ୍ରାତ ବସ୍ତୁର ହେ ତାତ୍ର ।
ହରିଙ୍କ ଧର୍ମ ଗୃହଚ୍ଛନ୍ଦ ଶତେ ଏକଷୋଂଶ ପଦ
ବୋଲେ କେଶବ ବାଆନ ପଦେ ଏହୁ ଛନ୍ଦ ଜନେ ବନ୍ଧ ।

No Colophon.

33

Cat. No. O.L. / 1065—D

ଛାନ୍ଦ ଭାରତ (ସୌପ୍ତିକ ପର୍ବ)

By—କେଶବ ଶ୍ରୀଚନ୍ଦନ

**Chhānda Bhārata (Sauptika Parva)**

Keśava Śrīchandana

Substance — Palmleaf. No. of folia — 28. Other descriptions are same as in Cat. No. O. L. / 1065-A and text same as Cat. No. O. L. / 366-D.

No Colophon.

34

Cat. No. O.L / 366—E

ଛାନ୍ଦ ଭାରତ (ଶାନ୍ତି ପର୍ବ)

By – କେଶବ ଶ୍ରୀଚନ୍ଦନ

**Chhānda Bhārata (Śānti Parva)**

Keśava Śrichandana

Palmleaf. No. of folia — 41. Other description are same as in Cat. No. O.L. / 366—A.

Beginning— ଶାନ୍ତିପର୍ବ— ପ୍ରଥମ ଛାନ୍ଦ ଲେଖ

ଜୟ ଜଗବନ୍ଧୁ ଯଶୋଦା ନନ୍ଦନ ଦୀନନାଥ ଅଘହର ।
ପାଣ୍ଡବ ଯୋଷିତ ଆରତ ତମିର ଦୀନନାଥ ଅଘହର ॥
ଭଜଇ ମାନବକେ ଭବୁଂ ହେଲେ ତାର କଉପର ସମ୍ଭବର (?)
ସରୁଛି ମୁଁ କଷ୍ଟେ କୃପା ହୋଉ ଚଣ୍ଡକର ହରଷ ମନର ।

× × ×

End— ଶାନ୍ତି ପର୍ବ ଯେ ରାଜମୋକ୍ଷ ଧର୍ମାଦ ଦାନଧର୍ମ କର୍ମ ବିଧାନ ।
ସମ୍ପୂର୍ଣ୍ଣ ହୋଇଲା ଯେଠାରେ-ରଚ୍ଛିଗଲ କେଶବ ନାମେ ଶ୍ରୀଚନ୍ଦନ ।

ଅଗାଧ,
ଚରିତ ଭାରତ ଆଖ୍ୟାନ,
ଯଥା ସଂକ୍ଷରେ ସଂକ୍ଷପି କହିଲି ଶୁଣ ସୁଜନେ ସାଧୁଜନ ।
ଯେ ଶାନ୍ତିପର୍ବ ବିଂଶତି ଛାନ୍ଦ କଲି ନବମ ଅଠସ୍ତରୀ ପଦ ।
ନିରତେ ଶ୍ରୀକୃଷ୍ଣ ପଦାରବିନ୍ଦରେ କଲି ଯେ ଅଷ୍ଟାଦଶ ପଦ ।

ସୁଜନେ,
ଯେ ଗୀତ ବଦନରେ ବାଦ,
ବିଷୟ ବିଷରେ ନ ମନ୍ଦ ନୋହିବ ଶମନଭୟ ଯେନ ଖେଦ ।

Metres and Vānis used in the Purva —

ବଙ୍ଗାଳଶ୍ରୀ, କୁମ୍ଭକାମୋଦୀ, ଭାରୈତବେଲି ବାଣୀ, କୃଷ୍ଣ କଳଶ ବାଣୀ, ରାମକେରୀ, ଚକ୍ରକେଳୀ ବାଣୀ, ବୋଲି ଭୂତେ, ଦେଶାକ୍ଷ, ବଙ୍ଗାଡ଼, ଗୀତା ଦୁଖୀୟ ଅଧାବାଣୀ, ଚିନ୍ତା, ଆହାରୀ, ଭାଟିଆରୀ ମୁଖାରୀ, କେଦାର, ଚୈତିବାଣୀ, କଲ୍ୟାଣ ଇତ୍ୟାଦି ।

No Colophon.

35

Cat. No. O. L./366-F

ଛାନ୍ଦ ଭାରତ (ଅଶ୍ୱମେଧ ପର୍ବ)

By — କେଶବ ଶ୍ରୀଚନ୍ଦନ

**Chhānda Bhārata** (Aśvamedha Parva)

Keśava Śrīchandand

Substance — Palmleaf.. No. of folia — 19. Other descriptions are same as in Cat. No. O.L. / 366—E.

ଅଶ୍ୱମେଧ ପର୍ବ, ପ୍ରଥମ ଛାନ୍ଦ ।।

ରାଗ—ମୁଖାରୀ

ଜୟ ଜୟ ଗୋବର୍ଦ୍ଧନ ଧର ।
ରାସ ରସିକ ମୁରଳୀ କର ।।
ବ୍ରଜ-ବନିତା ହୃଦୟ-ହାର ।
ମଧ୍ୟ ଯଶୋଦା ପ୍ରିୟକୁମର ।।
ଆହେ ତରଣିଜା ତଟ ନଟ ।
ଦାନ୍ତ କନକ କକ୍ଷ ପଟ ।।
ରାସ ରସେ ରସିକ ମୁକୁଟ ।
ଗୋପୀ ମୁଖପଦ୍ମ ମଧୁଲିଟ ।।

End— ଅଷ୍ଟଦୁର୍ଗ ଭୁବନର, ନଙ୍ଗଳ ବେଣୀ ନଗର
ସ୍ଥିତ ଅଟନ୍ତି ନୃହରି ଦାସ ନାମ ପାରିଷଦ ନୃପତିର ।।
ହେ ସୁଗମନର !
ତାହାଙ୍କ ପ୍ରିୟ କୁମର, ନାମ ଯା ସକଳେଶ୍ୱର ।
ପଟନାଏକ ଯେ ଗଦାଇ ବେବର୍ତ୍ତା ଭଗୀ ଅଟନ୍ତି ବର ।।

ହେ ସୁଗ୍ୟଂନର ?

ତାହାଙ୍କ ଠାରୁ ଜନମ, ହୋଇଲେ ପୁରୁଷୋତ୍ତମ
ତାଙ୍କର ହେଲେ ଜ୍ୟେଷ୍ଠ କୁମର, କୃପାସିଧୁଂ ଅଟେ ଯାହା ନାମ ।
ଧନେ ଉତ୍ତମ !

ଓଡ଼ିଶା ଅଷ୍ଟ ଦୁର୍ଗର, କରଣ କୁଳରେ ସାର
ସମନାଥ ପଟ୍ଟନାଏକ, ଯେ ଅଷ୍ଟ ଦୁର୍ଗେ କଲେ ସ୍ୱତନ୍ତ୍ର ଘର ।
ସେ ସୁଗ୍ୟଂନର !

ତାଙ୍କ ଦୋହିତାର ସୁତ, ଯେ କୃପାସିନ୍ଧୁ ସାକ୍ଷାତ,
ଯେ ହେଲେ ଦିବାନ ପଟ୍ଟନାୟକଙ୍କର ଭର୍ଗୀ ଜମ୍ବୁବତୀ କାନ୍ତ ।
ତାହାଙ୍କ ଗର୍ଭୁ ଜନମ, **କେଶବ** ମୋହର ନାମ ।
କରୁଣା କଟାକ୍ଷେ ମୋରେ ଅଙ୍ଗୀକାର କଲେ ଶ୍ରୀ ପୁରୁଷୋତ୍ତମ ॥
ଥିଲା ମୋ ଧର୍ମ,

ଯେଣୁ ଯେ ଛନ୍ଦ ଭାରତ ଗୀତରେ ହୋଇଲା ରତ,
ଶ୍ରୀକୃଷ୍ଣ କୃପାରୁ ଜଗତ ଯାକରେ ହୋଇବ ଯେ ଗୀତ ଖ୍ୟାତ ॥
ମୋହୋ ଭଣିତ,

ଯେକାଦଶ ଛନ୍ଦ ଅଶ୍ୱମେଧ ପର୍ବ ହେଲା ଶେଷ,
ସବୁ ଛନ୍ଦଯେ ପାଞ୍ଚଶ ନବୋତ୍ତର ଯେ ଛନ୍ଦ ଚଉପଲଣ ॥
ଜାଣ ବନ୍ଧୁଷ !

The following metres and Vāṇīs have been used in the Parva.

ମୁଖାରୀ, ମୁନବର ବାଣୀ, ଭଗବତ ବାଣୀ, କାମୋଦୀ; ଦକ୍ଷିଣ କାମୋଦୀ, କେଦାର କାମୋଦୀ, କୁମ୍ଭ କାମୋଦୀ, ଚକ୍ରାଆହାରୀ, ଭଟିଆରୀ, ତୋଡ଼ି (ଶିଶୁପାଳ ବୃଷର ଡାଳେ ବୃତ୍ତେ) ।

No Colophon.

36

Cat. No. O. L./366—G

ଛାନ୍ଦ ଭାରତ (ବ୍ୟାସାଶ୍ରମ ପର୍ବ)

By—କେଶବ ଶ୍ରୀଚନ୍ଦନ

**Chhānda Bhārata (Vyāsāśrama Parva)**

**Keśava Śrichandana**

Substance — Palmleaf. No. of folia — 11. Other description are same as in Cat. No. O. L./366—A

Beginning—

ବ୍ୟାସାଶ୍ରମ ପର୍ବ ଲେଖନ୍ତି
ରାଗ — କଳସା ବାଣୀରେ

ଜୟ ଜୟ ଜଗନ୍ନାଥ କମଳାରମଣ
ଜଗତଜନକାରଣ ଅଖିଳ ଶରଣ ।
ଯଦୁବଂଶକଞ୍ଜହଂସ କଂସ ଧ୍ୱଂସକାରୀ
କନ୍ଦରପ ଦରପଦଳନ ରୂପଧାରୀ ଯେ ।
କରୁଣାକର ବରୁଣାଳୟ ସୁତା ବର
ଅରୁଣାଧର ପୁରୁଣାକର ଚିତ୍ତ ମୋର ହେ ।
ବୋଲିବ ବ୍ୟାସାଶ୍ରମ ପର୍ବ ଛାନ୍ଦ କରି
କରିବ ଯେବେ କରୁଣା କମଳାବେଦ୍ଧାରୀ ଯେ ।

× × ×

End—

ତଦନ୍ତେ ରାଜ୍ୟକୁ ଆସିଲେ ମୁନିକଂ ମେଲାଣି କଲେ
ସେହିଦିନରୁ ରାଜ୍ୟଭୋଗ ପ୍ରୀତିକି ମାନସରୁ ବରଜିଲେ
ପର୍ବ ବ୍ୟାସ ଆଶ୍ରମ ଯେତିକିଠାରୁ ହେଲା ପୂର୍ଣ୍ଣିତମ ହେ ।
ମନେ ଚିନ୍ତ ଶ୍ରୀପୁରୁଷୋତ୍ତମ ହେ ।
ସାଟ୍ରୁଜନେ ମନେ ସେହିଦା ଭେଜନ ହେ ।

ଦକ୍ଷିଣ କୋଶଳ ଅଷ୍ଟଦୁର୍ଗ ପାଳ ହରିଚନ୍ଦନ ନୃପତି
ତାଙ୍କ ପାରୁଷଦ କବି କେଶବ ଶ୍ରୀଚନ୍ଦନ ଯେହୁ ବଦନ୍ତି ହେ ।
ଯେ ସର୍ବ ଅଷ୍ଟମ ଛାନ୍ଦ
ତିନିଶତ ଏକାଦଶ ପଦ ହେ ।
ଏହୁ ଛାନ୍ଦ ବଂଶ ପଦ ବୁଧ ହେ ।
ବନ୍ଦନରେ ନଶି ବନ ବଧ ହେ ।

No Colophon

37

Cat. No. O. L/366—H

ଛାନ୍ଦ ଭାରତ (ମୂଷଳୀ ପର୍ବ)

—କେଶବ ଶ୍ରୀଚନ୍ଦନ

**Chhānda Bhārata (Mūsalī Parva)**

Kesava Srichandana

Substance—Palmleaf. No. of folia — 13, Other descriptions are same as in Cat. No. O. L./366—A

Beginning—

ମୂଷଳୀ ପର୍ବ

ପ୍ରଥମ ଛାନ୍ଦ

ରାଗ —କଳହଂସ

ଜୟ ଜୟ ଜୟ ଯଶୋଦା ନନ୍ଦନ ଯମୁନା ଜଳକ୍ରୀଡ଼ାକାରୀ
ଜଳଧାବନ କାନନ ବେହାରୀ ।

ଯାମଳା ଅର୍ଜୁନ ଭଞ୍ଜନ ଗଞ୍ଜନ କାଳୀଦର୍ପ ହାରୀ ହେ
ଗୋବିନ୍ଦ ।

ଜହ୍ନୁନାଥ ଯାନ୍ତ ନା ଅପହାରୀ ।
ଗୋପୀଜନ ମାନସ ଅଘହାରୀ ।

ଯଦୁବଂଶ ଅମର କାମ ରହସ କଂସ ଧ୍ୱଂସନ ସହାରୀ
ହେ ଗୋବିନ୍ଦ !

× × ×

ମୁ ଯେ ଶ୍ରୀ ମହାଭାରତ ଚରିତ
ବୋଲିବି ବୋଲି ବଳାଇଛି ଚିତ୍ତ ।
ହେବ ସେ ନର୍ତ୍ତା ତୁମ୍ଭେ ଅବା କରୁଣା କରିବ ଯେବେ କିଂଚିତ ହେ,
ଗୋବିନ୍ଦ !
ଶୁଣ ସୁଜନେ ଯେତିକ ମନ ହୋଇଣ ମୁନିଙ୍କ ଏବଂ ବିଧାନ ।

End— ଛତ୍ରୀଙ୍କ ମଧ୍ୟେ ଉତ୍ତମ ନାମ ଯା ପୁରୁଷୋତ୍ତମ
ସ୍ୱୟଂ ବିଜେ କରନ୍ତି ଶ୍ରୀ ପୁରୁଷୋତ୍ତମ ।
ସେ ରାଜ୍ୟର ନରପତି ଗଜପତି ଯା ପଦ୍ଧତି
ତାଙ୍କ ଖଣ୍ଡଣି ସାମନ୍ତ ମଧ୍ୟେ ଉତ୍ତମ ।
ପୁରୁଷୋତ୍ତମ ମହାପାତ୍ର
ବଶ୍ୟ କର୍ମେ ତପ ଯ ର ତପନ ଗୋତ୍ର ।
ତାହାଙ୍କ ବଂଶେ ଉତ୍ପନ୍ନ କରଣ କୁଳେ ପ୍ରଧାନ
ପୁରୁଷୋତ୍ତମ ପଟ୍ଟନାୟକ ସୁତ ।
କୃପାସିନ୍ଧୁ ନାମ ହୋଇଂ ତାହାଙ୍କ ନନ୍ଦନ ମୁହିଂ
କେଶବ ବୋଲି ମୋ ନାମ ଜଗତେ ଖ୍ୟାତ ।
ରାଧାକାନ୍ତ କଲେ କରୁଣା,
ତେଣୁ ଏ ଭାରତ ଗୀତ କଲି ସ୍ମରଣା ।

ବସାଇଲି ନାନା ରାଗ ହେବ ସବୁର ସରାଗ
ଛାନ୍ଦ ଛାନ୍ଦ କଲି ଯେଣୁ ଭାରତ ଗୀତ ।
ତେଣୁ ଏ ଛାନ୍ଦ ଭାରତ
ନାମେ ବିଦିତ ଜଗତ ।
ହୋଇଲେ ମୋହିଲେ ଚିତ୍ତ ସନ୍ଥ ଜନର ।
ସମସ୍ତ ଛାନ୍ଦ ତିନଶତ
ଚଉଷଷ୍ଠି ଛାନ୍ଦରେ ହେଲା ସମାପ୍ତ ।

ଯେ ତିନଶ ଚଉଷଠି ଛାନ୍ଦକୁ ଷୋଳ ସହସ୍ର ତିନ ଢ଼ଉର ପଦରେ ସମ୍ପୂର୍ଣ୍ଣ ।
ଶ୍ରୀ ସଦାଜପେ ସମ୍ପୂର୍ଣ୍ଣ ।

Colophon— ଶ୍ରୀ ବୀର ଶ୍ରୀଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ କଳବରଗେଶ୍ୱର, ବୀରଧି ବୀରବର ପ୍ରତାପ ଶ୍ରୀ ରାମଚନ୍ଦ୍ର ଦେବ ମହାରାଜାଙ୍କ ବିଜେ ଶୁଭରାଜ୍ୟ ସମସ୍ତ ୧୫ ଅଙ୍କ ତୁଳ ୧୮ ଦିନେ ଶୁକ୍ରବାରେ ବେଳ ଦୁଇ ପହର ଠାରେ ଯେ ପୋସ୍ତକ ସମ୍ପୂର୍ଣ୍ଣ ହୋଇଲେ । ସେ ସୁଗ୍ୟାଂଜନମାନେ ଶୁଦ୍ଧ୍ୟ ଅଶୁଦ୍ଧ୍ୟ ପୂରେଇ ଗାଇବ, ଲେଖକାର ଦୋଷ ନ ଘେନମ ।

ଯେ ପୋସ୍ତକ ଶ୍ରୀ ଲିଙ୍ଗରାଜ ମହାପ୍ରଭୁଙ୍କ ହେବିଲଦାର ମଧସାହୁଙ୍କର ।

## 38

Cat. No. O.L. / 1253

### ଛାନ୍ଦ ଭାରତ

( କର୍ଣ୍ଣ ଓ ଅନ୍ୟାନ୍ୟ ପର୍ବ )

By — କପିଳେଶ ନନ୍ଦ

**Chhānda Bhārata**
**( Karṇṇa & Other Parvas )**
**Kapileśa Nanda**

**Substance—Palmleaf. No. of folia—179. Size—35.2× 2.7 C.M. Each side contains 1 to 4 lines. Character—Oriya.**

Date of copy—C. 19th century A D Complete. Condition—Worm eaten. Findspot—Bhubaneswar, Dt. Puri.

ପ୍ରଥମ ଛାନ୍ଦ

ରାଗ—ବଙ୍ଗଳା, ଆଷାଢ଼ଶୁକ୍ଳ ବାଣୀ ।

ଜୟ ସଦାଶିବ ଗିରିଜା ପତି । ମୁଁ ତୁମ୍ଭ ପଦେ କରୁଛି ବିନତି ॥
କର କରୁଣା ମୋ ବାଞ୍ଛା ପୂରଣ । କରଅ ମୁଁ କରୁଅଛି ଜଣାଣ ॥
ଶୁଣ ସାଧୁଜନରେ,
କର୍ଣ୍ଣ ପର୍ବକୁ କହୁଛି ଛାନ୍ଦରେ ॥

× × ×

ଜୟ ସଦାଶିବ ଜୟ ଶଶାଙ୍କଭୂଷଣ,
କରୁଛି ଜଣାଣ କର ମୋ ବାଞ୍ଛା ପୂରଣ ॥
ଶଲ୍ୟ ପର୍ବର ଚରିତ,
ଛାନ୍ଦ ବନ୍ଧି କହିବାକୁ ବଳାଇଛି ଚିତ୍ତ ॥

× × ×

ଜୟ ଶ୍ରୀଶଙ୍କର ଭକତ ସୋଦର ମୋଠାରେ ଅନୁଗ୍ରହ କର ।
ଏ ଭାରତ ଗାଥା ଗଦାପର୍ବ କଥା କହିବି ଗୀତରେ ବିସ୍ତାର ॥

× × ×

ଜୟ ସଦାଶିବ ମୋହର ବାଞ୍ଛା କର ପୂରଣ ।
ସୌପ୍ତିକ ପର୍ବକୁ ଭାଷାରେ କରିବଇଁ ବଖାଣ ॥

× × ×

ଏ ଯେ ମହାଭାରତ କଥା ସାଗର ବତ ଏଠାରେ ସମ୍ପୂର୍ଣ୍ଣ ହୋଇଲା ଯେ ॥

× × ×

ମନ୍ମଥାବ୍ଦ ବାରଶତ ସନ ଆବର ପଞ୍ଚାନବେ ସାଲରେ ଜାଣ ।
ଚଇତ ଦୁଇଦିନ ଦିବସ ଅବସାନ ସମୟେ ହୋଇଲା ସମ୍ପୂର୍ଣ୍ଣ ଯେ ॥
ଇଷ୍ଟଦେବ,
ଚରଣ କରୁଣାରୁ ପୁଣ,
ତାତ ମାତ ଗୁରୁଙ୍କ ପୁଣ୍ୟ ।
ଥିବାରୁ ଏହା ଶେଷ କଲି ଆହେ ବିଦୁଷ ନାହିଁ ମୋହର କିଛି ଜ୍ଞାନ ଯେ ॥

ବାଲ୍ୟ କାଳରେ ମୁହିଁ କିଛି ପଢ଼ିଲି ନାହିଁ ଜନକ ଯେତେ ତୋଷିଲେ ।
ନ ଶୁଣି ତାଙ୍କ କଥା କାଳ କାଟିଲି ବୃଥା ଗୋଷ୍ଠୀର ସଙ୍ଗ ସୁଖ ଭୋଳେ ଯେ ।
ତାହା ଦେଖି,
ବିରକତରେ ତାତ କିଛି,
କି କହିଲେ ଯେ ଆଉ ବାଛି ।
ବିରସରେ ଏତିକ ବୋଇଲେ ହୋଇବ କି ଭୁଞ୍ଜି ତୋ ଭାଲେ ଯାହାଅଛି ଯେ ॥

ପଛେ ଲୋଡ଼ିଲେ ବାବୁ ଆଉ ତୁ ନ ପାଇବୁ ଭାବିଲେ ନ ସରିବ ଦିନ ।
ଏପରି ବିରକତେ କହି ସେ କଥା କେତେ ପଛକୁ ହୋଇଲେ ମଉନ ଯେ,
ସେହିପରି,
ବିଂଶତି ବର୍ଷ ମୋର ଗଲା,
ପଢ଼ିବା ମାନସ ନୋହିଲା ।
ଏକବିଂଶ ଶେଷରେ ବାଇଶ ପ୍ରବେଶରେ ପୂର୍ବ ସୁକୃତ ଉଦେ ହେଲା ଯେ ॥

ତାତ ମାତଙ୍କ ପୁଣ୍ୟବଳେ ମୋହର ଜ୍ଞାନ ଜନମି ପଢ଼ିବା ପାଇଁକି,
ହୁଅନ୍ତେ ମତି ଯାଇଁ ଖୋଜି ଶିକ୍ଷକ ମୁହିଁ ଅତି ବୟସେ ହୋଇଁ ଦୁଃଖୀ ଯେ ।
ଏକାମ୍ବର,
ବନ ଶ୍ରୀ ଭୁବନେଶ୍ୱରରେ,
ନିବାସୀ ସାଧୁ ସ୍ୱଭାବରେ,
ସୁଦରଶନ ଦାସ ପଣ୍ଡିତ ତାଙ୍କ ଯଶ ପ୍ରକାଶ ଥିଲା ସେ କାଳରେ ଯେ ॥

ବିନୟ୍ତୀ ତାଙ୍କ ପାଦେ ଭୁଅନ୍ତେ ସେ ଆନନ୍ଦେ ସଂସ୍କୃତ କିଛି ପଢ଼ାଇଲେ
ତଦନ୍ତେ ଲୋକନାଥ ବାଚସ୍ପତି ପଣ୍ଡିତ ମୋର ସୁଭାଗ୍ୟକୁ ମିଳିଲେ ଯେ

ତାଙ୍କ ଯୋଗେ,
ଅନେକ କଥା ମୁଁ ଜାଣିଲି
ପଣ୍ଡିତ ହୋଇଗଲି ହେଲି,
ତା ଜାଣି ମୋ ପିଅର ଲଭି ସନ୍ତୋଷ ଘୋର ଆନନ୍ଦ ହେବାରି ଦେଖିଲି ଯେ ॥

ପିତାଙ୍କର କନିଷ୍ଠ ଭାଇ ଅତି ଗରିଷ୍ଠ ମତ୍ତ ଭାବରେ ମଜ୍ଜିଥନ୍ତି
ସକଳ ଗୃହଭାର ତାଙ୍କ ଠାରେ ପିଅର ଦେଇ ସେ କିଛି ନ ବୁଝନ୍ତି ଯେ,

ଭଲ ମନ୍ଦ,
ଯାହା ସେ ଇଚ୍ଛାରେ କରନ୍ତି
ଏ ତାଙ୍କୁ କିଛି ନ କହନ୍ତି,
ବହୁ ସୁତ ତାଙ୍କର ଥାନ୍ତି ରୂପେ ସୁନ୍ଦର ଶିକ୍ଷାର ପାଶକୁ ନ ଯାନ୍ତି ଯେ ।

କିଛି ଥିବାରୁ ବଡ଼ ଭୋଗରେ ଉନମତ ହୋଇ ଯନ୍ତୁଁ ନ ପଢ଼ିଲେ
ମୋର ପଢ଼ା କପର ନଷ୍ଟ ହେବ ଏପର ରଜନୀ ଦ୍ୱାରରେ ପାଞ୍ଚିଲେ ଯେ,

ପଢ଼ିବାକୁ,
ଯେବେ ମୁଁ ଯିବାର ଦେଖନ୍ତି,
ବିଷୟ କର୍ମକୁ ପଠାନ୍ତି,
ପଢ଼ି ବସିଲେ ଦେଖି କୋପେ ତରଛି ଆଖି ନାନା କୁବଚନ ଭାଷନ୍ତି ଯେ ।

ତାଙ୍କ ଉପ୍ପରେ ମୁହିଁ ଘରେ ପଢ଼ଇ ନାହିଁ ସକଳ ସୁଖକୁ ବରଜ
ଲୁଚି ଘରୁ ପଳାଏ ଏହା ତାହାଙ୍କ ଭୟେ କ୍ଷୁଧା ବା ତୃଷାକୁ ନ ହେଜ ଯେ,

ଏହିପର,
ବହୁ କଷଣେ କିଛି ଦିନ
କରନ୍ତେ ବିଦ୍ୟା ଅଧ୍ୟୟନ,
ମୋର ଜ୍ୟେଷ୍ଠ ସୋଦର ନାମ ଭୁବନେଶ୍ୱର ନନ୍ଦ ସେ ଅତି କ୍ଷମାବାନ ଯେ ।

ଦିନେ ସେହି ଚୁଡ଼ୁତା କହନ୍ତେ କଟୁକଥା ମୋତେ ତା' ଦେଖି ବଡ଼ଭାଇ
ଟାଣିଲେ କରୁଣାରେ କମାଇ ତା ସଙ୍ଗରେ ଅଚ୍ଛତ ଏପର ଲଗାଇ ଯେ,

ତାହା ଲାଗି,
ଯେ କାର୍ଯ୍ୟ ହେଉଅଛି ବନ୍ଦ
ମୋତେ ତା ଦିଅ ତେଜ ଦ୍ୱନ୍ଦ,
ତାହା ମୁଁ କରିବଇଁ କରୁ ସେ କ କରଇ ବଳରେ ଅତି ମନ୍ଦ ଯେ ॥

ପ୍ରେତ୍ନ ତାଙ୍କ ବଚନ ଶୁଣନ୍ତେ ସେହି ଦିନ ଠାରୁ ସେ କିଛି ନ କହିଲେ,
କିନ୍ତୁ ମୋର ଅର୍ଜନ ଯାଏ ଭଲ ବସନ ଖଣ୍ଡେହେଁ ଶ୍ରଦ୍ଧାରେ ନ ଦେଲେ ଯେ,
ଦରିଦ୍ରର,
ଅବସ୍ଥା ଧରି ବୁଲୁଥାଇ
ପଢ଼ିବା ପାଇଁ ସଦା ଧାଇଁ,
ଏହି ବିଧିରେ ମୁହିଁ ବିଦ୍ୟା ଶିକ୍ଷା କଲଇଁ ଦୁଃଖରେ କେତେଦିନ ଯାଇ ଯେ ।

ଶ୍ରୀଗୁରୁ ତାତ ମାତ କୃପାରୁ ଯା କିଞ୍ଚିତ ହେବାରୁ ପଢାଶୁଣା ମୋର
ଅନେକ ଗୁଣବନ୍ତ ଜନଙ୍କର ସାକ୍ଷାତ ହୁଅନ୍ତେ ଆଦେଶ ତାଙ୍କର ଯେ,
ଏ ଭାରତ,
ଚରିତ ଛନ୍ଦରେ ଲେଖିଲି
ଅକ୍ଷୟ ରହିବ ଏ ବୋଲି,
ଧନୀମାନଙ୍କ ଧନ ନ ରହେ ବହୁଦିନ ଦେଖିଣ ତହିଁ ନ ମଜ୍ଜିଲି ଯେ ॥

ଅରଜ ବହୁ ବିତ୍ତ ନ କଲି ତା ସଞ୍ଚିତ ଅସ୍ଥିର ବୋଲି ତାହା ଜାଣି
ଦେଖିଲି କବିଙ୍କର କବିତା ରହି ଚିର ତାହାଙ୍କ ଯଶକୁ ବଖାଣି ଯେ,
ଲୋକ ମଧ୍ୟେ,
ପ୍ରକାଶ ଭାବେ ଅଛି ରହି,
କେହିହେଁ କ୍ଷୟ ସେ ନୁହଇ
ତହୁଁ ନାନା ଚରିତ କରି କବିତା ଗୀତ ଆପଣା ନାମ ରଖିଲଇଁ ଯେ ।

ଏକାମ୍ର କାନନରେ ସୁନ୍ଦର ସୂଦା ପୁରେ ବିପ୍ର ଶ୍ରୀ ରଘୁନାଥ ନନ୍ଦ,
କୁଳଦେବିତ୍ୱା ନିପୁଣ ଦେବ ବିପ୍ର ସେବନ କରନ୍ତି ହୋଇ ସେ ଆନନ୍ଦ ଯେ,
ତାଙ୍କ ସୁତ,
ମୋ ନାମ **କପିଳେଶ ନନ୍ଦ**

ଏ ପଦ' କଲି ଭିନ ଗ୍ରନ୍ଥ,
ସମ୍ପୂର୍ଣ୍ଣ ହେଲ ମହାଭାରତ କଥା ଯାହା ଶୁଣନ୍ତେ ଖଣ୍ଡିବ ବିପଦ ଯେ ।

ଶ୍ରୀ ଶିବାର୍ପଣମସ୍ତୁ ।

No Colophon

39

**Cat. No. O. L /512—A**

ଛାନ୍ଦ ଭୂଷଣ

By—ଉପେନ୍ଦ୍ର ଭଞ୍ଜ

**Chhānda Bhūṣaṇa**

Upendra Bhañja

Substance—Palmleaf. No. of folia—57. Size—35.3× 3.3 C.M. Each side contains 5 lines throughout the manuscript. Character—Oriya Date of copy—19th century A.D. Complete. Condition—Not so good. Find spot—Haladiā, P. S. Khurdhā, Dist Puri.

**Beginning—**

ଶ୍ରୀ ଗଣେଶାୟ ନମଃ

ରାଗ — ମାଳବ

କମଳା କମଳାସନ କନକ ବରନ,
କମଳ କମଳଧର ବଞ୍ଚିତ ବଦନ ଯେ ।
କଳପ କଳାପ ଦୈତ୍ୟ କଳାପ ସୂଦନ
କର ଖିଳ କଉଶିକ ଭସ୍ମ ବିଚ୍ଛେଦନ ହେ ।

କନକ କନକରୁଚି ରୁଚିର ବରନ
କୁମୁଦ କୁମୁଦ ବନ୍ଧୁ ହାସ ପରଶନ ଯେ ।
କେ ସରି କେଶରୀ ରୂପ ହିରଣ୍ୟ ଦାରଣ
କାମଦ କାମଦଣ୍ଡନ ସ୍ୱରୂପ ଧାରଣ ଯେ ।

× × ×

କହିଣ ଗୋମୂତ୍ର ଛନ୍ଦେ ସ୍ତୁତି ଭଗବାନେ
କହେ ଉପେନ୍ଦ୍ର ଭଞ୍ଜ ହରଷିତ ମନେ ଯେ ।

× × ×

End—

କ୍ଷପାବାସରେ ଯେ ଯଶ ରହୁ ମୋର ଚିତ୍ତେ
କ୍ଷେପଣ ଆନ ବିଷୟ ହୋଇବ ନହିଁତେ ଯେ ।
କ୍ଷିପ୍ରେ ଯେବଡ଼େ ଅନୁଗ୍ରହ କରିବେକ ହରି
କ୍ଷମେ କି ତାମର ଲଙ୍ଘିବାକୁ ଦ୍ୱିପେଶ୍ୱରୀ ଯେ ।
କ୍ଷୀର ଜଳ ପଲ୍ଲବ ଯେ ହୁଅଇ ମଧୁର
କ୍ଷୀରୋଦଚର ବଇରି କୃପା ମୋତେ କର ହେ ।
କ୍ଷେମେ ଏ ଛାନ୍ଦ ଭୂଷଣ ଗୀତ ହେଲା ଶେଷ
କ୍ଷୁଦ୍ରକ ବୁଦ୍ଧି ଉପେନ୍ଦ୍ର ଭଞ୍ଜ କହେ ରସ ହେ !

Colophon— ଶ୍ରୀମସ୍ୟାପି·········ନ ବିଦ୍ୟତେ ।

The work contains 34 Chhāndas or Chapters and each Chapter begins with 34 alphabets from କ to କ୍ଷ respectively The author used different metres and vānis which are given below.

୧-ମାଳବ, ୨-କଳହଂସ କେଦାର, ୩-ଦେଶାଖୀ, ୪-କଉଶିକ, ୫-ବରାଡ଼ି; ୬-ଚିନ୍ତା ରସକେଇଲା, ୭-ରାଜବିଜେ, ୮-କନଡ଼ା, ୯ କଳସ, ୧୦-ବଙ୍ଗଳଶ୍ରୀ, ୧୧-କୁମ୍ଭକାମୋଦୀ, ୧୨-ରାମକେରୀ, ୧୩-କଲ୍ୟାଣ ଆହାରୀ, ୧୪-ବିଭାସ ଗୁର୍ଜରୀ,

୧୫- କଲ୍ୟାଣ, ୧୬- ଘଣ୍ଟାରବ, ୧୭- ପାହାଡ଼ିଆ କେଦାର, ୧୮- ବସନ୍ତ ବରାଡ଼ି, ୧୯- କାମୋଦୀ, ୨୦- ଶଙ୍କରାଭରଣ, ୨୧- କାଳୀ, ୨୨- ଚିନ୍ତା-ଭୈରବ, ୨୩- ବସନ୍ତ ଭୈରବ, ୨୪- ବସନ୍ତ, ୨୫- କେଦାର ଚକ୍ରକେଳୀ, ୨୬- ନଳିନୀଗୌଡ଼ା, ୨୭- ମୁନିବର, ୨୮- ମଙ୍ଗଳ ଗୁଜ୍ଜରୀ, ୨୯- ବସନ୍ତ ଦେଶାକ୍ଷ, ୩୦- ଛନ୍ଦମଞ୍ଜରୀ ।

## 40

Cat. No. O.L /581

### ଛାନ୍ଦ ଭୂଷଣ

By – ଉପେନ୍ଦ୍ର ଭଞ୍ଜ

**Chhānda Bhūṣana**

Upendra Bhañja

Substance— Palmleaf. No. of folia — 63. Size — 32.9×3 C.M. Each side contains 4 to 5 lines Character — Oriya. Date of copy — C. 18th century A.D Complete. Condition— Wormeaten. Findspot—Madhupur, Dist. Cuttack.

Text same as in Cat. No. O. L. / 512—A discussed previously.

No Colophon.

41

Cat. No. O.L. / 626

## ଛାନ୍ଦ ଭୂଷଣ

By—ଉପେନ୍ଦ୍ର ଭଞ୍ଜ

**Chhānda Bhūṣana**

Upendra Bhañja

Substance—Palmleaf. No. of folia—98. Size—25.6 × 3.3. C.M. Each side contains 4 to 5 lines. Character—Oriya. Date of copy — 1754 Śaka or 1832 A. D. Complete. Condition—Good. Findspot—Khallikote, Dist.— Ganjam.

Beginning—

ଶ୍ରୀ ଗଣେଶାୟ ନମଃ

ରାଗ—ମାଳବ

କମଳା କମଳାସନ ସନକ ବନ୍ଦନ, କମଳ କମଳଧର ବନ୍ଧିତ ବଦନ,
କଳାପ କଳ ପ ବୈଷ୍ଟ କଳାପଦ୍ବନ, କଲ୍‌ଶିକ କଲ୍‌ଶିକ ଭଯ୍ଯ ବଛେଦନ।
କନକ କନକ ସମ ରୁଚିର ବସନ, କୁମୁଦ କୁମୁଦ ବନ୍ଧୁ ହାସ ଦରସନ।

× × ×

ଷମେ ଏ ଛନ୍ଦ ଭୂଷଣ ଗୀତ ହେଲା ଶେଷ,
କ୍ଷଲ୍ଲକ ବୃନ୍ଦ ଉପଇନ୍ଦ୍ର କହେ ରସ ହେ।

ସମାପ୍ତଶ୍ଚାୟଂ ଗ୍ରନ୍ଥଃ।

There are 34 chapters and each chapter has been written in Chautiśā form i. e. କ—କ୍ଷ order.

Colophon—ଶ୍ରୀମସ୍ୟାପି············ନ ବନ୍ଦ୍ୟତେ।

ଶ୍ରୀ ହରିହରାୟ ନମଃ। ଶକାବ୍ଦ ୧୭୫୪। ଶ୍ରୀମଦ୍ ଗୋବିନ୍ଦ ଶାନ୍ତବର୍ଣ୍ଣକାର୍ଯ୍ୟେ ନମଃ। ୧୭୫୪।

42

Cat. No. O L. / 990

ଛାନ୍ଦ ଭୂଷଣ

By—ଉପେନ୍ଦ୍ର ଭଞ୍ଜ

Chhānda Bhūṣana

Upendra Bhañja

Substance—Palmleaf. No. of folia—42 Size—29× 3 7 C M Each side contains 5 to 7 lines Character—Oriya Date of copy—C. 18th century A D. Incomplete. Condition—Not so good. Findspot — Presented by Sūryamaṇi Devī, Vill. / P.O. Gadamāṇitri, Dist. Puri.

Text same as in Cat. No. O. L. / 512—A discussed previously.

No. Colophon

43

Cat. No. O. L./1411–A

ଛାନ୍ଦ ଭୂଷଣ

By—ଉପେନ୍ଦ୍ର ଭଞ୍ଜ

Chhānda Bhūṣana

Upendra Bhañja

Substance—Palmleaf. No. of folia—40. Size—42 4× 3 9 C.M. Each side contains 3 to 5 lines. Character—Oriya Date of copy—C. 19th century A. D Complete Condition—Wormeaten. Findspot—Bhubaneswar, Dist. Puri.

ଶେଷେ ଏ ଛାନ୍ଦ ଭୂଷଣ ଗୀତ ହେଲା ଶେଷ ।
ଷୁଣ୍ଣକ ବୃତ୍ତି ଉପେନ୍ଦ୍ର ଭଞ୍ଜ କହେ ରସ ଯେ ।

No Colophon.

## 44

Cat. No. O. L./1246.

### ଛାନ୍ଦ ରାମାୟଣ (ଆଦ୍ୟ—କିଷ୍କିନ୍ଧା କାଣ୍ଡ)

By—କପିଳେଶ ନନ୍ଦ

### Chhānda Rāmāyana (Ādya—Kiṣkindhā Kāṇda)

Kapileśa Nanda

Substance—Palml. af. No. of folia—192. Size—35·6× 3 3 C. M. Each side contains 4 to 5 lines. Character—Oriya. Date of copy—Sana 1312 Sāla or 1905 A D. Complete. Condition—Worm eaten. Find spot—Bhubaneswar. Dist—Puri. Name of the scribe—Sarveśvara Nanda.

ହୋଇଲା କିଷ୍କିନ୍ଧା କାଣ୍ଡ ଶେଷ ଏଠାରେ
କହିଲଇଁ ଏହା ଏକଶଂଶ ଛାନ୍ଦରେ ।
ପିତାମାତା ଗୁରୁ ଇଷ୍ଟଦେବ କୃପାରେ
ବୋଲେ କପିଳେଶ ନନ୍ଦ ଭବ ତରିବାରେ ।

× × ×

Colophon— ଭଗ୍ନପୃଷ୍ଠ ......... ପ୍ରତିପାଳୟେତ୍
ଯ୍ତ୍ନମସ୍ୟାପି ......... ନ ଦୃଶ୍ୟତେ ।

ଏ ପୁସ୍ତକ ଜି-ଧାଣ୍ଡିମାଳେ, କ-ଖୋର୍ଦ୍ଧା, ମୌ-କପିଳେଶ୍ୱର ନିବାସୀ ବ୍ରାହ୍ମଣ ଶ୍ରୀ ଲୋକନାଥ ମିଶ୍ରଙ୍କର । ଏଥିରେ କାହାର ଅଂଶ ନାହିଁ । ଏ ପୁସ୍ତକ ଯେ ମାଗିନେଇଁ ନ ଦେବ ତାହାର ସପ୍ତପୁରୁଷ ତଳ ଏହାଙ୍କ ସପ୍ତପୁରୁଷ ଉପର । ସେ ପୁସ୍ତକ ସ ୧୩୧୨ ସାଲ ମେଷ ଦି ୯ ନ ରବିବାରେ ମଧ୍ୟାହ୍ନ ସମୟରେ ସଂପୂର୍ଣ୍ଣ ଲେଖା ହୋଇଲା । ଲେଖକକୁ ଆହେ ସୁବୁଦ୍ଧିଜ ପଣ୍ଡିତମାନେ ତାର କଲ୍ୟାଣ କରିବାକୁ ହେବ । ଲେଖକ ନିତାନ୍ତ ଅଧମ, ଅଯୋଗ୍ୟ ଓ ଅଜ୍ଞ । ଏଣୁକରି ଲେଖକ

ଦୋଷାଦୋଷ ନ ଧରିବା ହେବେ । ଏଣୁ ଶ୍ରୀ କପିଳେଶ୍ୱର ଦେବ୍ୟାଭୂଷଣଙ୍କ ଅନୁଗ୍ରହରୁ ଲେଖକର କଛୁ ଜ୍ଞାନ ହୋଇଅଛି । ଶ୍ରୀ କପିଳେଶ୍ୱର ରକ୍ଷା କରନ୍ତୁ । ଲେଖକର ନାମ ଶ୍ରୀ ସର୍ବେଶ୍ୱର ନନ୍ଦ, ସା-ସୁନ୍ଦରପଦା, ଜ-ଦାଣ୍ଡିମାଳ, କ ଖୋର୍ଦ୍ଧା ।

ଶ୍ରୀ ଶୁଭମସ୍ତୁ ।

**45**

Cat. No. O. L./1248

ଛାନ୍ଦ ରାମାୟଣ (ଆଦ୍ୟ—ସୁନ୍ଦର କାଣ୍ଡ)

By—କପିଳେଶ ନନ୍ଦ

**Chhānda Rāmāyaṇa (From Ādya to Sundarā Kandā)**

**Kapileśa Nanda**

Substance — Palmleaf. No. of folia — 230. Size— 38. 5×3 5 C.M. Each side contains 4 to 5 lines. Character— Oriya. Date of copy — Sana 1305 Sāla or 1898 A. D. Complete. Condition—Worm eaten. Findspot— Bhubaneswar-2, Dt. Puri. Name of the scribe—Sarveśvara Nanda. Village—Sundara Padā.

ସୁନ୍ଦର କାଣ୍ଡ ଯେଉଁଠାରେ ଶେଷ ହେଲା ଶୁଣ ନରେ
ଯେ ରାମ ଚରିତ ହରଇ ଦୁରିତ ଶୁଣିଗଲେ ଭକତରେ
ସୁମତରେ !
ଶ୍ରୀ ରଘୁନାଥ ନନ୍ଦନ
କରୁ ଶିବ ପାଦେ ଧ୍ୟାନ ।
ବୋଲେ ଯେ ଚରିତ ଖଣ୍ଡ ମୋ ଦୁରିତ ହେ ପ୍ରଭୁ ପଞ୍ଚ ବଦନ !
ମୋ ଭକ୍ତି ଘେନ ।

Colophon— ଶ୍ରମସ୍ୟାପି··············ନ ବିଦ୍ୟତେ ।
ଭଗ୍ନପୃଷ୍ଠଃ··············ପ୍ରତିପାଲୟେତ୍ ।

ସମସ୍ତ ମୁକୁନ୍ଦ ଦେବ ମହାରାଜାଙ୍କ ୨୧ ଅଙ୍କ ସ୍ନ ୧୩୦୫ ସାଲ କନ୍ୟମାସ ର ୧୮ନେ ଆଶ୍ୱିନ୍ୟ ମଳମାସ ଶୁକ୍ଳପକ୍ଷ ଦ୍ୱିତୀୟା ରବିବାରେ ଏ ଦିନ ଦିବସ ଘ ୧୧ଣ୍ଡ ସମୟରେ ମୌ— ସୁନ୍ଦରପଦା ନିବାସୀ ପଣ୍ଡିତ ଶ୍ରୀ କପିଳେଶ୍ୱର ବିଦ୍ୟାଭୂଷଣ ନନ୍ଦଙ୍କ ଘରଠାରେ ଏହି ଛାନ୍ଦ ସଂଗ୍ରହ ସମ୍ପୂର୍ଣ୍ଣ ହୋଇଲା । ଏ ଗ୍ରନ୍ଥ ଲେଖକ ସୁନ୍ଦରପଦା ନିବାସୀ ବ୍ରାହ୍ମଣ ଶ୍ରୀ ସର୍ବେଶ୍ୱର ନନ୍ଦ । ଏ ପୁସ୍ତକ ରଚିତ ଶ୍ରୀ କପିଳେଶ୍ୱର ବିଦ୍ୟାଭୂଷଣଙ୍କର ।

ଶ୍ରୀ ଶିବାର୍ପଣମସ୍ତୁ, ଶ୍ରୀ ଶିବାର୍ପଣମସ୍ତୁ, ଶ୍ରୀ ଶିବାର୍ପଣମସ୍ତୁ ।

## 46

Cat. No. O. L/1245.

### ଛାନ୍ଦ ରାମାୟଣ (ଲଙ୍କା—ଉତ୍ତରକାଣ୍ଡ)

By—କପିଳେଶ ନନ୍ଦ

**Chhānda Rāmāyaṇa (Laṅka–Uttara Kanda)**

**Kapileśa Nanda**

Substance—Palmleaf No. of folia—213, Size—28.1 × 3.1 C M. Each side contains 4 to 6 lines. Character—Oriya. Date of Copy—1899 A.D. Complete. Condition—Worm eaten. some folia are broken at the beginning of the manuscript. Find spot—Bhubaneswar, Dist Puri. Name of the scribe—Sarveśvara.

ମହମହ ସନ ବାରଶ ଅଠାନବେ ସାଲ
ଭାଦ୍ର ମାସ ଶୁକଳ ଚତୁର୍ଦଶୀ ବେଳ ।

ଦଶଘଣ୍ଟି ଠାରେ ହେଲା ଏ ଗ୍ରନ୍ଥ ସମ୍ପୂର୍ଣ୍ଣ
ନାମ ଏହାର ହୋଇଲା ଗ୍ରନ୍ଥ ରାମାୟଣ ।

ବହୁ ରାମାୟଣ ଦେଖି ଏହା ମୁଁ ଲେଖିଛି
କ୍ଷମା କର ସାଧୁଜନେ ଦୋଷ ଥିଲେ କିଛି ।

× × ×

ଆଦିକାଣ୍ଡ ଅଣଚାଶ ଅଯୋଧ୍ୟା ଚରିଶ
ଆରଣ୍ୟ ପଞ୍ଚାଶ କିଷ୍କିନ୍ଧା ଏକବିଂଶ ।

ସୁନ୍ଦର କାଣ୍ଡ ସତର ଗ୍ରନ୍ଥ ଆଉ ଶୁଣ
ତେଷଠି ଗ୍ରନ୍ଥରେ ଲଙ୍କାକାଣ୍ଡ ଯେ ପୂରଣ ।

ଉତ୍ତର କାଣ୍ଡ ଯେ ଏକବିଂଶ ଗ୍ରନ୍ଥେ ଶେଷ
ହୋଇଅଛି ଗଣନରେ ବୁଝ ହେ ବିଦୁଷ ।

ଦୁଇଶ ଛବିଶ ଗ୍ରନ୍ଥେ ସକଳ ପୂରଣ
ହୋଇଅଛି ସାତକାଣ୍ଡ ଗ୍ରନ୍ଥ ରାମାୟଣ ।

× × ×

ବୋଲେ ରଘୁନାଥ ନନ୍ଦ ସୁତ କପିଳେଶ
ଏ ଭବ ସାଗରୁ ମୋତେ ଉଦ୍ଧର ମହେଶ ।

Colophon — ଭଗ୍ନପୃଷ୍ଠ.........ପ୍ରତିପାଳୟେତ୍ ।

ଶ୍ରୀ ମୁକୁନ୍ଦ ଦେବ ମହାରାଜାଙ୍କ ଅ ୨୨ଙ୍କ ସନ ୧୮୯୯ ମସିହା ଶ୍ରାବଣ ଶୁକ୍ଳପକ୍ଷ ନବମୀ ସୋମବାର ଦିନ ବେଳ ତିନପ୍ରହର ଠାରେ ଏ ଗ୍ରନ୍ଥ ରାମାୟଣ ସଦାନନ୍ଦେ ସମ୍ପୂର୍ଣ୍ଣ ହୋଇଲା । ଆହେ ସୁଜ୍ଞଜନମାନେ ଶୁଦ୍ଧ ଅଶୁଦ୍ଧ ପୂରାଇ ଗାଇବ । ଲେଖନକାର ଦୋଷ ନ ଧରିବାକୁ ହେବ । ଲେଖନକାର କିଛି ନ ଜାଣଇ । ଆଉ ତାହାର କୌଣସି ଶକ୍ତି ନାହିଁ । ଶକ୍ତି ଥିଲେ ସୁଦ୍ଧା କୌଣସି କାରଣରୁ ଆମଙ୍କ ନାହିଁ । ତାହାର ନାମ ସର୍ବେଶ୍ୱର । ଆଉ ସେ ଏହିପରି ଗୃହାଳୀ ଖଣ୍ଡିଏ କରି ଏହି ଗ୍ରନ୍ଥମାନ ଲେଖି ବସିଥାଏ । ଏ ପୁସ୍ତକ ଜନ୍ମେ—ଜାଣ୍ଡିମାନେ, କାଠିଲ—

ଦଶଖଣ୍ଡ ଠାରେ ହେଲା ଏ ଛାନ୍ଦ ସମ୍ପୂର୍ଣ୍ଣ
ନାମ ଏହାର ହୋଇଲା ଛାନ୍ଦ ରାମାୟଣ ।
ବହୁ ରାମାୟଣ ଦେଖି ଏହା ମୁଁ ଲେଖିଛି
କ୍ଷମା କର ସାଧୁଜନେ ଦୋଷ ଥିଲେ କିଛି ।

× × ×

ଆଦିକାଣ୍ଡ ଅଣଚାଶ ଅଯୋଧ୍ୟା ତିରିଶ
ଆରଣ୍ୟ ପଞ୍ଚାଶ କିଷ୍କିନ୍ଧା ଏକବିଂଶ ।
ସୁନ୍ଦର କାଣ୍ଡ ସତର ଛାନ୍ଦ ଆଉ ଶୁଣ
ତେଷଠି ଛାନ୍ଦରେ ଲଙ୍କାକାଣ୍ଡ ଯେ ପୂରଣ ।
ଉତ୍ତର କାଣ୍ଡ ଯେ ଏକବିଂଶ ଛାନ୍ଦେ ଶେଷ
ହୋଇଅଛି ଗଣନରେ ବୁଝ ହେ ବିଦୁଷ ।
ଦୁଇଶ ଛବିଶ ଛାନ୍ଦେ ସକଳ ପୂରଣ
ହୋଇଅଛି ସାତକାଣ୍ଡ ଛାନ୍ଦ ରାମାୟଣ ।

× × ×

ବୋଲେ ରଘୁନାଥ ନନ୍ଦ ସୁତ କପିଳେଶ
ଏ ଭବ ସାଗରୁ ମୋତେ ଉଦ୍ଧର ମହେଶ ।

Colophon — ଭଗ୍ନପୃଷ୍ଟ..........ପ୍ରତିପାଳୟେତ୍ ।

ଶ୍ରୀ ମୁକୁନ୍ଦ ଦେବ ମହାରାଜାଙ୍କ ଅଙ୍କ ୨୨ଙ୍କ ସନ୍ ୧୮୯୯ ମସିହା ଶ୍ରାବଣ ଶୁକ୍ଳପକ୍ଷ ନବମୀ ସୋମବାର ଦିନ ବେଳ ତିନପ୍ରହର ଠାରେ ଏ ଛାନ୍ଦ ରାମାୟଣ ସଦାଜୟେ ସମ୍ପୂର୍ଣ୍ଣ ହୋଇଲା । ଆହେ ସୁଜ୍ଞଜନମାନେ ଶୁଦ୍ଧ ଅଶୁଦ୍ଧ ପୂରାଇ ଗାଇବ । ଲେଖନକାର ଦୋଷ ନ ଧରିବାକୁ ହେବ । ଲେଖନକାର କିଛି ନ ଜାଣଇ । ଆଉ ତାହାର କୌଣସି ଶକ୍ତି ନାହିଁ । ଶକ୍ତି ଥିଲେ ସୁଦ୍ଧା କୌଣସି କାରଣରୁ ଆମଙ୍କ ନାହିଁ । ତାହାର ନାମ ସର୍ବେଶ୍ୱର । ଆଉ ସେ ଏହିପରି ଗୃହାଳୀ ଖଣ୍ଡିଏ କରି ଏହି ଛାନ୍ଦମାନ ଲେଖି ବସିଥାଏ । ଏ ପୁସ୍ତକ ଜନ୍ମେ—ହାଣ୍ଡି ମାରେନ୍ତେ କାଲୁ—

ଓୋଭଧା, ମୌଜେ—ସୁନ୍ଦରପଦା, ବ୍ରାହ୍ମଣ ଶ୍ରୀ ରଘୁନାଥ ନନ୍ଦଙ୍କ କନିଷ୍ଠ ପୁତ୍ର ଶ୍ରୀ କପିଳେଶ୍ୱର ବିଦ୍ୟାଭୂଷଣଙ୍କର । ଅନ୍ୟ କାହାର ଅଧିକାର ହୋଇ ପାରିବ ନାହିଁ । ଏ ପୁସ୍ତକ ଯେ ମାଗିନେଇ ନ ଦେବ, ତାହାର ସପ୍ତପୁରୁଷ ଅନ୍ଧନରକରେ ପଡ଼ି ହେବେ ।

ଇତି ଶ୍ରୀ ଶିବାୟ ନମଃ ।

47

Cat. No. O.L / 415—D

ଛାୟା ପରଚେ

By—ଅଚ୍ୟୁତାନନ୍ଦ ଦାସ

Chhāyā Parache

Achutānanda Dāsa

Substance—Palmleaf, No of folia—16. Size—23.2 ×4 C.M. Each side contains 4 to 6 lines. Character—Oriya, Date of copy— C. 19th century A.D. Complete. Condition—Good. Findspot — Dharādharapur, P. S. Jagatasimhapur, Dist. Cuttck

Beginning —

ଶ୍ରୀ ଅଚ୍ୟୁତାନନ୍ଦ ଶରଣ ।
ଶ୍ରୀ ଛାୟା ପରଚେ ଲେଖନି ।
ରାମଚନ୍ଦ୍ରଙ୍କୁ ପାଶରେ ବସାଇଂ,
ବୋଲନ୍ତି ଶୁଣହେ ବାଳ ତନଇଂ ।
ତୋତେ କହିବି, ହେ। ଅମୂଲ୍ୟ ଭାବ,
ଯେତୁକ ମନେଣ କରିଥାଅ ଠାବ ।
ଯାହା ଶୁଣିଲେ ସୁଗତି ପାଇବୁ,
କୋଟିଏ ଜନ୍ମର ଦୁଃଖ ନାଶିବୁ ।

ତୋତେ କହିବା ହୋ ବ୍ରଜନନ୍ଦନ,
ସ୍ଥୂଳ ସୂକ୍ଷ୍ମଂର କିଛି ଭେଦ ଶୁଣ ।
ଯେ ଦେହ ଗୋଟିକ ଯେତ୍ନ ଧରଛି,
ସକଳ ସୁଖ ସମ୍ପତ୍ତି ଯେ ଇଚ୍ଛି ।
ଯାହାର ଥିଲେ ଜଗତ ପୂଜଇ,
ଯାହାକୁ ଜଗତଯ‌‌,କ ଭଜଇ ।
ପ୍ରାଣୀମାନଙ୍କ ଅଙ୍ଗରେ ଯା ବାସ,
କୀଟ ପତଙ୍ଗ ଠାବର ପ୍ରକାଶ ।
ଜଗତ ଯାକେ ଯେତ୍ନ ପୂରିଅଛି,
ତାହା କହିବା ହୋ ବରଜ ବଚ୍ଛ ।

× × ×

ସ୍ଥୂଳ ସୂକ୍ଷ୍ମର କହିବା ଯେ ଗତି,
ସ୍ଥୂଳ ଦଗ୍ଧ ହେବ ବୋଲେ ଅଚ୍ୟୁତ ।

× × ×

End— ସ୍ୱେଗାନ୍ତୁଂ ସ୍ୱେଗାର ସ୍ୱେଗାନ୍ତୁଂ ତଉବଶଂ,
ବୃକ୍ଷରେ ପତ୍ର ଲଗିଛି ଆଠଶ ।
ଆଠଶ ପତ୍ରକୁ ଗୃହଣ ଶାଖା,
ଷୋଳହ ମଧ୍ୟେ ଏକୋଇଶ ରେଖା ।
ହରବଟି ଦୁଇ ଗୁଣିମୂ ତ୍ରିନ,
ଜାଣିବୁ ଚନ୍ଦ୍ରନବ ଅଶଂ ଘେନ ।
ଆଠରେ ଆଠ ଆଠରେ ଠଅ,
ଅଠାଅଶୀରେ ଜଳନ୍ଧର ଭୂଅ ।

× × ×

ଯେମନ୍ତ ହୋଇ ଯେବା ଅକ୍ଷର ସ୍ଥିତି,
ଭେଦ କରିଲେ ପାମର ଅଚ୍ୟୁତ ।

No Colophon.

**48**

Cat. No. O.L. / 559—C

ଛାୟା ସଂହିତା

By — ଅଚ୍ୟୁତାନନ୍ଦ ଦାସ

**Chhāyā Saṁhitā**

Achyutānanda Dāsa

Substance—Palmleaf. No. of folia—5. Size—283.× 3.7 C.M. Each side contains 3 to 6 lines. Character—Oriya. Date of copy— C 19th century A.D. Complete. Condition—Not so good. Findspot—Tureintrā, P.S. Baliantā, Dist—Puri.

ରାମଚନ୍ଦ୍ରଙ୍କୁ ପାଶରେ ବସାଇଂ, ବୋଲନ୍ତି ଶୁଣ ହେ ବାଳ ତନଇ ।
ତୋତେ କହିଦେବା ଅମୂଲ୍ୟଧନ, ଏକ ଭାବରେ ଶୁଣ ଦେଇ ମନ ।
ଯାହା ଶୁଣିଲେ ସୁଗତି ପାଇବୁ, କୋଟିଏ ଜନ୍ମର ଦୁଃଖ ଦହିବୁ ।

× × ×

ଛାୟା ବ୍ରହ୍ମଙ୍କୁ ଶଙ୍କର ସାଧିଲେ, ସୁରମାନଙ୍କ ଉପରେଂ ରଖିଲେ ।

× × ×

ଗୁପତ କର ହେ ବରଜ ସୁତ, ପରତେ ହୁଅ ବୋଇଲେ ଅଚ୍ୟୁତ ।
ଛାୟା ସଂହିତା କହିଲି ହେ ରାମ, ସାବଧାନେ ମାନ ଗୁରୁ ବଚନ ।
ସାବଧାନ କର କହିଲି ତୋତେ, ଯାଗ ରାମଚନ୍ଦ୍ର ବୋଲେ ଅଚ୍ୟୁତେ ।

ଛାୟା ସଂହିତା ସମ୍ପୂର୍ଣ୍ଣ ।

No Colophon.

49

Cat. No. O.L / 834—B

ଛାୟା ସଂହିତା

By—ଅଚ୍ୟୁତାନନ୍ଦ

**Chhāyā Saṁhitā**

Achyutānanda

Substance—Palmleaf No. of folia—7. Size—20.3 × 3.7 C.M. Each side contains 4 to 5 lines. Character—Oriya. Date of copy—C. 19th century A.D. Complete. Condition—Good. Findspot—Bhubaneswar, Dist. Puri.

Beginning—Same as in 'Chhāyā Parache' (O.L /1415–D) discussed previously.

End— ଅତି ଗୁପତରେ ରଖିଥାଅ ଚଉ,
ବେଳକୁ ଉଦୟେ ଶ୍ରୀକୃଷ୍ଣ ଭକ୍ତ ।
ସେହୁ ଜାଣିମେ ଯେଥିର ବୃତ୍ତାନ୍ତ,
ସାଧନା କରି ତୁ କରୁ ଗୁପତ ।
ଗୁପତ କରୁ ହୋ ବରଜ ସୁତ,
ପରତେ ହୁଅ ବୋଇଲେ ଅଚ୍ୟୁତ ।
ଛାୟା ସହିତା କହିଲି ହୋ ରାମ,
ସାବଧାନ ମାନ ଗୁରୁ ବଚନ ।
ସାବଧାନ କରି କହିଲି ତୋତେ,
ଜାଗ ରାମଚନ୍ଦ୍ର ବୋଲେ ଅଚତେ ।

ଛାୟା ସହିତା ସମ୍ପୂର୍ଣ୍ଣ ।

No Colophon.

50

Cat. No. O. L./872—C

## ଛାୟା ସଂହିତା

By— ଅଚ୍ୟୁତ ନନ୍ଦ

## Chhāya Saṁhitā

Achyutānanda

Substance—Palmleaf. No. of folia—6. Size—21 1× 3.3 C. M. Each side contains 4 lines through out the manuscript. Character—Oriya, Date of copy—C. 19th Century A. D. Complete. Condition—Good. Find spot—Bhubaneswar, Dist- Puri.

ଶୁଣ ହୋ ସମ ଅପୂର୍ବ ହରଷ
ଛାୟା ବ୍ରହ୍ମରେ ହୋ ଶରଣ ପଶ ।
ଯେନ୍ତୁ ଗୁଇରେ ହୋ ଶିବ ସମାଧି
ଛଡ଼ି ଚନ୍ଦରେ ଯେ ହୋଇଛୁ ଭେଦ ।
ଛାୟା ବ୍ରହ୍ମକୁ ଟେକର ସାଧିଲେ
ସୁରମାନଙ୍କ ଉପରେ ରଖିଲେ ।

× × ×

ପ୍ରଥମେ ଯେମନ୍ତ କରବୁ ବାବୁ
ନାନା ଉପଚାର ବଧି କରବୁ ।
ଗୁରୁଙ୍କୁ ନାନା ଆଭରଣ କର
ଶଏ ଯେକବାର ପ୍ରଲମ୍ବ କରି ।
ଶ୍ରୀଗୁରୁଙ୍କ ମନ ତୋଷ କରବ
ସେ ତୋଷେ ଛାୟା ଦ୍ରଶନକୁଂ ହେବ ।

× × ×

ଦ୍ୱାଦଶ ବରଷ ସାଧିଲେ ବାବୁ
ସ୍ଥିଇର ସଙ୍ଗତେ ସ୍ଥିଇ ହୋଇବୁ ।

× × ×

No Colophon

51

**Cat. No. O. L /1464—A**

ଛାୟା ସଂହିତା

By—ଅଚ୍ୟୁତାନନ୍ଦ

**Chhāyā Samhitā**

Achyutānanda

Substance—Palmleaf. No. of folia—4. Size—38.5× 3.3 C.M. Each side contains 4 lines throughout the manuscript. Character—Oriya Date of copy—C. 19th century A.D. Complete. Condition—Good. Findspot—Jenāpur area, Dist—Cuttack.

ଛାୟା ସାଧନା କର ତୁ ହୋ ରାମ । ଛଚ୍ଛନ୍ଦେ ପାଇବୁ ଅମୂଲ୍ୟ ସ୍ଥାନ ॥
ଦୁଷ୍ଟଙ୍କୁ ଏହା କେବେ ନ କହିବୁ । ଅଗ୍ୟାନ ଆଗେ ଗୁପତେ ଥୋଇବୁ ॥
ମୋହୋର ସୂକୃତ ତୋତେ ହେ! ରାମ । କେବେ ନ କହିବୁ ପ୍ରେମ ଭେଦମାନ
ଅତି ଗୁପତେ ରଖିଥାଅ ତତ୍ତ୍ୱ । ସାଧନା କର କରଣ ଗୁପତ ॥
ପରତେ ହୃଅ ବୋଲଇ ଅଚ୍ୟୁତ । ଗୁପତ କର ହୋ ବରଜ ସୁତ ॥

ଇତି ଛାୟାସଂହିତା ସମ୍ପୂର୍ଣ୍ଣ ।

No Colophon.

## 52

Cat. No. O.L/1468—A

ଛାୟା ସଂହିତା

By—ଅଚ୍ୟୁତାନନ୍ଦ

**Chhāyā Samhitā**

Achyutānanda

Substance— Palmleaf No. of folia — 8. Size — 21.6×3 4 C.M. Each side contains 3 to 4 lines Character— Oriya. Date of copy — Sana 1315 Sāla or 1908 A. D. Complete. Condition—Some folia are worm eaten. Findspot— Jenāpur area, Dist. Cuttack.

ଛଇ ସାଧନା କହିଲୁ ହେ ରାମ । ଛଛନ୍ଦେ ପାଇବୁ ଅମୂଲ୍ୟ ସ୍ଥାନ ।
ଦୁଷ୍ଟଙ୍କୁ କେବେହେଁ ଏହା ନ କହିବୁ । ଅଗ୍ୟାନୀ ଆଗେ ଗୁପତେ ଥୋଇବୁଁ ।
ମୋହର ଶପଥ ତୋତେ ହୋ ରାମ । କେବେହେଁ ନ କହିବୁ ପ୍ୟେ ଭେଦମାନ ॥
ଅତି ଗୁପତେ ରଖିଥାଅ ଚିତ୍ତ । ସାଧନା କର କରଣ ଗୁପତ ।
ଗୁପତ କରହୋ ବରଜ ସୁତ । ପରତେ ହୁଅ ବୋଲଇ ଅଚ୍ୟୁତ ।

ଇତି ଛାୟା ସଂହିତା ସମାପ୍ତ ॥

Colophon— ଖ୍ରମସ୍ୟାପି········ନ ବିଦ୍ୟତେ ।

ଶ୍ରୀଗୁରୁ ଉଦ୍ଧାର କରିବେ ଅଧମ ଆରତକୁ । ସମସ୍ତ ମୁକୁନ୍ଦଦେବ ୩୩ଅଙ୍କ ସ୍ନ ୧୩୧୫ ସାଲ ଫାଲ୍‌ଗୁନ ଢ ୨୯ ନ ବୁଧବାରେ ଗୋଧୂଳି ସମୟରେ ଏ ପୁସ୍ତକ ସମ୍ପୂର୍ଣ୍ଣ ହୋଇଲେ ।

53

Cat. No. Or. Ms/74.

ଜଗଦୀଶ ଜଣାଣ ଓ ଅନ୍ୟାନ୍ୟ

By—ମଦନମୋହନ ସିଂହ

**Jagadiśa Jaṇaṇa and others**

Madanamohana Simha

Substance—Paper. No. of pages—104 Size—22 3× 17 7 C. M Each side contains 13 to 20 lines. Character—Oriya. Date of copy—C. 20th century A. D. Incomplete. Condition—Good. Find spot—Oriental Manuscripts Library, Madras.

କ୍ଷୁଦ୍ର ହୋଇଛୁ ଛୁଦ୍ର ବୁଦ୍ଧି, କ୍ଷୁଧାରେ କେପିବ କ କଥି ।
କ୍ଷମା କୋଟ ମଣ୍ଡନ ଶ୍ରୀ ମଦନ ମୋହନ,
କ୍ଷମେ ଶିମ ଯେ (?) ବଉଚଲ ହେ ।

× × ×

ଧର୍ମକୋଟ ନୃପବର୍ଣ୍ଣ, ଶ୍ରୀ ଶ୍ରୀ ମଦନମୋହନ
ଭଣିଲେ ହୃଅ ପ୍ରସନ୍ନ ହେ ।

× × ×

ଶ୍ରୀ ଧର୍ମକୋଟ ଭୂପ ମୁକୁଟ ଭଣିଲେ ଶରଧାରେ ।
ଶ୍ରୀଗଙ୍ଗା ଶରଣ୍ୟ କର ପ୍ରସନ୍ନ ହେବେ ତୋତେ ।

No Colophon.

54

Cat. No. O L /862H

## ଜଗନ୍ନାଥ ଅବକାଶ ଛାନ୍ଦ

By—କେଶବ ଭଞ୍ଜ

**Jagannātha Avakāśa Chhānda**

Keśava Bhañja

Substance—Palmleaf. No. of folia—23 Size—27.7× 3 C M. Each side contains 3 to 4 lines. Character—Oriya Date of copy—C. 19th century A.D. Complete. Condition—Good. Findspot – Bhubaneswar, Dist. Puri. Name of the Scribe—Visvanātha Devaśarmā. Vill. Vira Purușottamapur.

ଶ୍ରୀ ଜଗନ୍ନାଥଙ୍କ ଅବକାଶ

ପ୍ରଥମ ଛାନ୍ଦ

ରାଗ – ଗୁଜ୍ଜରୀ

ପ୍ରାଚୀ ଦଶେ ପ୍ରକାଶି ହୁଅନ୍ତେ ଦିବାକର ।
ପଦ୍ମନେତ୍ର ଅପଦ୍ମର ପାଞ୍ଚି ମାନସର ଯେ ॥

× × ×

ସେ ସ୍ଥାନ ଉଦେଶ ଯାମ କରି ଶିରେ ଧରି ।
କହଇ କେଶବ ଭଞ୍ଜ ହେଲ ମୁଁ ନସ୍ତାର ହେ ॥

× × ×

ମାନିାଞ୍ଜଳ କେଶବଙ୍କ ଧ୍ୟାନ କରି,
କହଇ କେଶବ ଭଞ୍ଜ ମୋର ସେବା ଅଟଇ ତାହାଙ୍କ ପରି
ହେ ସୁଜନେ !

Colophon— ସାରଶ୍ରୀ ଜସନ୍ତ ଶୀଡ଼େଶ୍ୱର.....ପ୍ରତାପ ଶ୍ରୀ ରାମଚନ୍ଦ୍ରଦେବଙ୍କ ମହାରାଜାଙ୍କ ୭ ଅଙ୍କ ଶ୍ରାବ ମିଥୁନ ଶନଦିନେ ଆଷାଢ଼ କୃଷ୍ଣଦଶମୀ ଗୁରୁବାରେ ଅଶ୍ୱିନୀ

ମେଷସଂକ୍ରାନ୍ତିରେ ୧ । ୧ ତିଥି ଦଶମୀ କୁମ୍ଭ ଲଗ୍ନେ କୈଳବ କରଣରେ ଅମୃତ ଯୋଗରେ ଏ ଦିନ ବେଳ ଦୁ ୨ଇ ପହର ଠାରେ ବିଶ୍ୱନାଥ ଦେବ ଶର୍ମଣ ପୁସ୍ତକ ସମାପ୍ତ ବିରି- ପୁରୁଷୋତ୍ତମପୁର ଶାସନରେ ଲିଖିଣି ବିଶ୍ୱନାଥ ଦାସେ ।

55

**Cat. No. O. L /372**

ଜଗନ୍ନାଥ ଗୀତା ଓ ଅନ୍ୟାନ୍ୟ

By—ଜଗନ୍ନାଥ ଦାସ ଓ ଅନ୍ୟାନ୍ୟ

**Jagannātha Gītā & others**

Jagannātha Dāsa and others

Substance—Palmleaf. No. of folia—97. Size—15× 3 7 C.M. Each side contains 1 to 5 lines. Date of copy—C. 18th Century A.D. Incomplete. Condition—Badly wormeaten. Findspot—Village—Dhāradharapur area, P: S: Jagatsimhapur, Dist. Cuttack.

It contains Gupta Gitā, Padma Kalpa Tikā, Ananta Dāsa Gitā, Dvārakā Dāsa Gitā, Yaśovanta Dāsa Gitā, Jaganna Gitā, Avadhuta Praśnottara, Hari Dāsa Gitā, Ratnākara Dāsa Gitā, Aṇākāra Śavada and Janāṇas of different authors.

ଶୁଣ ହେ ବୈଷ୍ଣବ ଭାଇ ପଚ୍ଛୁରୁଛୁ ଆମ୍ଭେ
ଯତ୍ନକରି ମାଳାଗୋଟି ପକାଅ ଆରମ୍ଭେ ।
ମାଳାଗୋଟି ପକାଉଛ କେତେ ଭୁଜ କହ
କେତେ ଗଣ୍ଡି ପାଦ ତାର କେଉଁଠି ଶିର କହ ।

× × ×

ଏ ରୂପେ ଷୋଳ ନାମ ଜାଣ ।
ଦ୍ୱିଜ ଜଗନ୍ନାଥ ପଶେ ଶରଣ ॥

× × ×

ବଳରାମ ଦାସ କହିଲେ ଗାଈ ଚହ୍ନିଲେ ଯିବଟି ଚର ।

× × ×

କହେ ହରି ଦାସ ଗୁପତ ନ କର
ଏତକ ଅଳପ ସିନା କହ ମୋ ଆଗର ॥

× × ×

ଷୋଳପଦ୍ମ ଗୀତ ଏ ଗୁରୁ ଉପଦେଶ
କୃଷ୍ଣ ଦାସ ଆଗରେ ଫେଡ଼େ ରତ୍ନାକର ଦାସ ।

× × ×

ବିନ୍ଦୁ ଅକ୍ଷରୁ ହୋଇଲା ଅଶେଷ
ଶିଶୁ ଅନନ୍ତ ସେହିଠାକୁ ଆଶ ॥

× × ×

ଅଣ ଯେ ଅକ୍ଷର ଶୂନ୍ୟମଣ୍ଡଳ ଗୋଟିଏ
ଆଦ୍ୟ ଯେ ଅପୂର୍ଣ୍ଣ ବ୍ରହ୍ମ ତଥିରୁ ଜାତ ହୋଏ ।

× × ×

କହେ ଦୀନକୃଷ୍ଣ ଦାସ ସାଧୁଚରଣ ଧ୍ୟାୟି ।

× × ×

ଦୀନ ସ୍ୱପ୍ନାନନ୍ଦ ଘଟେଳ ମୁଁ ଡାକୁଛି ଅବହେଳେ ॥

× × ×

କହେ ଯଶୋବନ୍ତ ମନରେ ଭେଦ ।

× × ×

ଦୀନ ଅଚ୍ୟୁତ କଥା ମନରେ ଯେ ଥିବ ।
ଆପଣେ ତରିବ ସେହି ପରେ ନିସ୍ତାରିବ ॥

× × ×

ତିନଙ୍କ ଚରଣ ସେବେ ବିଶ୍ୱକର୍ମା ଗଣ୍ଡା ଦାସ

× × ×

କ୍ଷମା କର ମୋର ଦୋଷ
ଛନ୍ଦ ଚଉତିଶା ଜଣାଣ କରଇ
ଭଣଇ ଅଚ୍ୟୁତ ଦାସ ॥

No Colophon.

## 56

Cat. No. O.L./511--B

ଜଗନ୍ନାଥ ଚରିତାମୃତ

By—ଦିବାକର ଦାସ

**Jagannātha Charitāmṛta.**

Divākara Dāsa

Substance—Palmleaf. No. of folia—117. Size—34 6 × 3.7. C.M. Each side contains 5 to 6 lines. Character—Oriya. Date of copy —C. 19th century A.D. Complete up to 24th chapter. Condition—Badly worm eaten. Findspot—Haladiā P. S. Khurdhā, Dist.—Puri.

There are two folias containing the contents of the work in Oriya prose at the beginning of the manuscript.

ଶ୍ରୀ ଜଗନ୍ନାଥ ଚରିତାମୃତ ପ୍ରଥମ ଅଧ୍ୟାରେ ସିଦ୍ଧ (?) ଗୁରୁପ୍ରଣାଳୀ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ସିଦ୍ଧ ଅଙ୍ଗ ଅଚ୍ୟୁତବଡ଼ ଗୋସାଇଂଙ୍କ ସିଦ୍ଧ ଅଙ୍ଗ, କ୍ଷେତ୍ରଶିଷ୍ୟଙ୍କ ସିଦ୍ଧ ଅଙ୍ଗ, ଦ୍ଵିତୀୟ ଅଧ୍ୟାୟରେ ସିଦ୍ଧଗୁରୁ ଯେଉଂ ଗୁରୁଙ୍କୁ ଆଦର, କେଉଂ ଗୁରୁଙ୍କୁ ତ୍ୟାଗ ଅଧିସିଦ୍ଧି, ଅଚ୍ୟୁତବଡ଼ ଗୋସାଇଂଙ୍କ ପଦସିଦ୍ଧି, ସର୍ବ ବୈଷ୍ଣବଙ୍କ ରସ୍ଥବାର (?)

ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଷେବ ଆଶ୍ରେ ଦ୍ୱାଦଶ, ତୃତୀୟ ବୃନ୍ଦାବନ ସ୍ଥିତ, ଚତୁର୍ଥ ଅଧ୍ୟାରେ ସିଦ୍ଧି ଅମଣେହା ଭାବ ମୁଣୋହ ନିତ୍ୟ ହରିନାମ ପଞ୍ଚାଙ୍ଗ, ଜଗନ୍ନାଥଙ୍କର ଭଜନ ନାମ ବସୁସ ପଞ୍ଚତତ୍ତ୍ୱ, ପଞ୍ଚମ ଅଧ୍ୟା ସିଦ୍ଧ କଳ୍ପବୃକ୍ଷ ଗୋହ ହରିନାମ କବଚ, ଯେଉଁ ନାମ ଯେଉଁ ଅକ୍ଷରେ, ଯେଉ ସଖୀ ଯେଉ ଅକ୍ଷରେ, ଷଷ୍ଠ ଅଧ୍ୟାରେ ସିଦ୍ଧି ଭଜନନାମ ଭଜନ ତତ୍ତ୍ୱ ଗ୍ରନ୍ଥନ, ସପ୍ତମ ଅଧ୍ୟା ହରିନାମ ଟୀକା ଛଅ.ଗୋସାଇଂ ନାମ ପୂର୍ବକାଳ ସିଦ୍ଧ ଚୈତନ୍ୟ ଗୋସାଇଂଙ୍କ ସଙ୍ଗେ ନାମ ପରିଚ୍ଛନ (?) ଅଷ୍ଟମ ଅଧ୍ୟାରେ ସିଦ୍ଧ ସ୍ୱକୀୟା ପରକୀୟା ଭକ୍ତ ଭଜନନାମ ପରିଚ୍ଛନ୍ନ ଭଜନନାମ କୃତନଧ୍ୟାନ ଦ୍ୱାଦଶ ପ୍ରେମଭାବ ମହନ୍ତ ପଦନସ୍ଥା ରତି ପ୍ରୀତି ମୃତ୍ତଭାବ, ନବଅଧ୍ୟାରେ ସିଦ୍ଧ ଭଜନନାମ ଭଜ ଆତ୍ମା ଶିଷ୍ୟଗୁରୁ ଜଗନ୍ନାଥ ଏ ଭଜନଭାବ, ଦଶମ ଅଧ୍ୟାରେ ଶ୍ରୀ ଗୋପୀଙ୍କର ଦୈରକ୍ତଦଶା, ପ୍ରେମସିଦ୍ଧି, ଭକ୍ତିସିଦ୍ଧି, ମୁକ୍ତିସିଦ୍ଧ, ଏକାଙ୍ଗୀଭକ୍ତି, ଶ୍ରୀ ଚତୁର୍ଧର୍ମ ଯୁଗଳ ବର୍ଣ୍ଣନା, ଏଗାର ଅଧ୍ୟାରେ ସିଦ୍ଧି ନିତ୍ୟସ୍ଥାପ୍ତି ଇତ୍ୟାଦି।

Beginning of the work—

ଆଦ୍ୟ ଗୁରୁଙ୍କୁ ନମସ୍କାର । କରୁଛି ବିପ୍ର ଦିବାକର ।
ସମସ୍ତ ବୈଷ୍ଣବ ଚରଣ । ବିପ୍ର ଦିବାକର ଶରଣ ॥
ଅଧମ ପଣ ମୋର ଥିଲା । ଗୁରୁଙ୍କ ବାକ୍ୟେ ନାଶ ଗଲା ।
କାଳୁ ସମସ୍ତ ଯେ ଅଛଇ । ତୁମ୍ଭ ଆଜ୍ଞାରେ ଯିବ ସେହି ।
ଭକ୍ତିର ପଥ ଦେଖାଇବ । ସଙ୍ଗେ ସଙ୍ଗତ କରି ନେବ ।

End— ଏମନ୍ତ ମହିମା ଯାହାର । ଶରଣ ବିପ୍ର ଦିବାକର ।

ଇତିଶ୍ରୀ ଜଗନ୍ନାଥାମୃତେ ଶ୍ରୀ ଅଚ୍ୟୁତ ଗୋସାଇଂଙ୍କ
ଜଗନ୍ନାଥ ଦାସ ଗୋସାଇଂଙ୍କ ଚରିତାମୃତେ ନାମ
ଚତୁର୍ବିଂଶୋ ଅଧ୍ୟାୟ ।

No Colophon.

There are some folia containing ରସକଲ୍ଲୋଳ by ଦୀନକୃଷ୍ଣ ଦାସ at the beginning of the manuscript.

Cat No. O. L./670

## ଜଗନ୍ନାଥ ଚରିତାମୃତ

By—ଦିବାକର ଦାସ

**Jagannātha Charitāmṛta**

Divākara Dāsa

**Substance — Palmleaf. No. of folia — 163. Size— 28. 5×3. C.M. Each side contains 4 to 5 lines. Character— Oriya Date of copy —12th Amka year of Divyasimha Deva III of Khurdhā dynasty. Complete. Condition—Good Find spot—Vill. Putanā Tāngi, Dt. Puri. Name of the scribe— Gangādhara Pattanaik. Potanā.**

**End—** ଏମନ୍ତ ମହିମା ଯାହାର, ସେ ପାଦେ ବିପ୍ର ଦିବାକର ॥

ଇତିଶ୍ରୀ ଜଗନ୍ନାଥ ଚରିତାମୃତେ ଶ୍ରୀ ଅତିବଡ଼ ଜଗନ୍ନାଥ ଦାସ ଗୋସାଇଂ ଶ୍ରୀଅଙ୍ଗେ ନର୍ତ୍ତି ପ୍ରସ୍ଥନେ ନାମ ଚତୁର୍ବିଂଶ ଅଧ୍ୟାୟ ।

Colophon—ଭୀମସ୍ୟାପି············ନ ବିଦ୍ୟତେ ।

ଯଥାଦୃଷ୍ଟ ତଥା ଲେଖନ । ଶୁଦ୍ଧ ଅଶୁଦ୍ଧ ଦୃଷ୍ଟେଇ ଗାଇବ । ଲେଖକାର ଦୋଷ ନ ଧରିବ । ଶ୍ରୀ ରାମନାମ । ଶ୍ରୀ ଦିବ୍ୟସିଂହ ଦେବଙ୍କ ୧୨ ଅଙ୍କ କନ୍ୟା ଦି ୨୨ ନେ ଶୁକଳ ପକ୍ଷ ଅଷ୍ଟମୀ ମଙ୍ଗଳବାରେ ମୁଲୁକ ଗଡ଼ଚଣ୍ଡି ବାଜିତପଡ଼ା ନେତୁ ପଦର ମଧୁଦାସଙ୍କ ମଠଠାରେ ବେଳ ପାଞ୍ଚଘଡ଼ି ଠାରେ ଏ ପୋଥିକ ସମ୍ପୂର୍ଣ୍ଣ ହୋଇଲେ । ଏ ପୋଥିକ ଯେ ମାଗିନେଇଂ ଗ୍ରହଇଂ ନେଇଂ ନ ଦେବେ ତା ସପତ ପୁରୁଷ ଉଦ୍ଧାର ନୋହିବେ । ଶ୍ରୀଚୈତନ୍ୟ ପ୍ରଭୁ ଉଦ୍ଧରିବେ ମଧୁଦାସଙ୍କୁ । ଏ ପୋଥିକ ଭୁବନେଶ୍ୱର ପୁର ଏକାଦଶୀର ପୋତନା ନିବାସୀ ଗଙ୍ଗାଧର ପଟ୍ଟନାୟକଙ୍କର । ××× 

58

Cat. No. Or.H / 10

# ଜଗନ୍ନାଥ ଚରିତାମୃତ

By—ଦିବାକର ଦାସ

**Jagannātha Charitāmṛta**

Divākara Dāsa

Substance—Palmleaf. No. of folia—85. Size—31.2 × 3.8 C.M. Each side contains 5 lines throughout the manuscript Character — Oriya. Date of Copy — C. 18th century A. D. Incomplete. Condition— Good. Findspot—Puri.

End—

ଶ୍ରୀ ଅଡ଼ବଡ଼ ଯେ ଗୋସାଇଁ, ସକଳ ଭକ୍ତ ଗ୍ୟାଂତା ସେହି ।
ଶ୍ରୀ ଜଗନ୍ନାଥ ଦରଶନ, ଦିନେକ କଲେ ଅନ୍ୟେ ମନ ।
ଶ୍ରୀ ଅଡ଼ବଡ଼ ଜଗନ୍ନାଥ, ତେଣୁ ସେ ସାଧୀ ଅଂଶେ ଜାତ ।
ମନୁଷ୍ୟେ ସ୍ୱାମୀ ଜଗନ୍ନାଥ, ଭାବ ସେବଲେ ପ୍ରେମ ପଥ ।
ଅଷ୍ଟକାଳ ସେବା କରନ୍ତି, ଘୁମୁରୁ ଦଣ୍ଡେ ନ ଛାଡ଼ନ୍ତି ।
ରସରେ ହୃଦରେ ଶୁଆଇ, ତେବେ ବସନ୍ତି ଥିର ହୋଇଁ ।
ଷୋଳ ଶିଷ୍ୟଙ୍କୁ ପ୍ରେମ୍ଦା କହି, ପ୍ରେମ ଭକ୍ତ ମାଗି ଦେଖାଇଁ ।
ପ୍ରେମକାନ୍ତ ଭାବକୁ ଭାବିଲେ, ପ୍ରେମ ବିନୁଂ ଅନ୍ୟ ନ ଜାଣିଲେ ।
ସୁବିସ୍ତା ଭଗତ ବିସ୍ତର, କହିଲି ବିପ୍ର ଦିବାକର ।
ଆଜ ତା ଭଗତ ସାଧନ, ପଢ଼ି ଶୁଣିବ ଯେଉଁ ଜନ ।
ପ୍ରେମ ଭଗତର ସାଧନ, ଲଭିବେ ପ୍ରେମ ଭକ୍ତିଧନ ।
ମୋ ନାମ ଦିବାକର ଦାସ, ହେ ସନ୍ଥେ କ୍ଷେମା କର ଦୋଷ ।

ଇତିଶ୍ରୀ ଜଗନ୍ନାଥ ଚରିତାମୃତେ ନାମ ଦ୍ୱାବିଂଶୋ ଅଧ୍ୟାୟ ।

No Colophon.

## 59

Cat. No. Or H / 32

### ଜଗନ୍ନାଥ ଚରିତାମୃତ

By — ଦିବାକର ଦାସ

**Jagannātha Charitāmṛta**

Divākara Dāsa

Substance — Palmleaf. No of folia — 107. Size — 39.5 × 3.3 C.M. Each side contains 4 to 5 lines. Character — Oriya Date of copy — 1210 Sāla or 1803 A.D. Incomplete. Condition- Brittle, Badly wormeaten. Findspot — Dharādharapur, P. S. Jagtasimhapur, Dist. Cuttack Name of the scribe — Māguṇi Dāsa.

Text same as in Cat. No. OrH/10 discussed previously.

Colophon — ଏ ପୁସ୍ତକ ଲେଖା ହେଲା, ବାରପଲା ବଶେ ଓକଲ ଗ୍ରାମରେ ଶ୍ରୀ କୋଠ ଖଣ୍ଡିଆ ଡ଼ିହ ଦାନ ଜମିରେ ଘର ଭିଆଇ ଗୋସାଇଂ ମାଗୁଣି ଦାସଙ୍କର । ଏ ପୁସ୍ତକ ଜଗନ୍ନାଥ ଚରିତାମୃତ ସମ୍ପୂର୍ଣ୍ଣ ହୋଇ ମୁକୁନ୍ଦ ଦେବଙ୍କ ନ' ଅଙ୍କେ ସନ ୧୨୧୦ ସାଲେ କନ୍ୟା ୨୨ ଦିନ ସପ୍ତମୀ ବୁଧବାର ଦିନ ଲେଖକ ମାଗୁଣି ଦାସ ।

## 60

Cat. No. Or.H/41

### ଜଗନ୍ନାଥ ଚରିତାମୃତ

By — ଦିବାକର ଦାସ

**Jagannātha Charitāmṛta**

Divākara Dāsa

Substance — Palmleaf No of folia — 120. Size — 33.9 × 3.2 C.M. Each side contains 4 to 5 lines. Character — Oriya

Date of copy—Sana 1295 Sāla or 1888 A.D. Complete. Condition—Good. Findspot—Presented by G. N. Dās Gosvāmī Adhikārī, Village—Tāṅgi, Dist — Cuttack. Name of the scribe—Padma Charaṇa Mahānti, Village—Hariharapur.

Text same as in Cat. No. Or. H/10

Colophon— ସମସ୍ତ ଦିବ୍ୟସିଂହ ଦେବ ମାହାରାଜାଙ୍କ ବଜସ୍ୱେ ଶୁଭରାଜ୍ୟେ ୩୫ ଅଙ୍କ ସନ ୧୨୯୫ ସାଲ ମାହେନ୍ଦ୍ର ଭାଦ୍ରବ ୨୫ ଦିନ ଗୁରୁବାର, ଆଶ୍ୱିନ୍ୟ କୃଷ୍ଣପକ୍ଷ ଷଷ୍ଠୀ ଇଂରେଜୀରେ ସୀତମ୍ବର (ସେପ୍‌ଟେମ୍ବର) ତା ୮ ଶକ ସନ ୧୮...... ମସିହା ଏ ସନ ସାଲ ପୂର୍ବବର୍ଷ ଠାରୁ ରାଜା ମହ୍ନସୁଙ୍କ ଦ୍ୱୀପାନ୍ତର ହୋଇଅଛନ୍ତି । ଏଣୁକରି ନାଆଂ ବାଳମୁକୁନ୍ଦ ଦେବ ୩ ଅଙ୍କ ହୋଇବ । ଏ ପୁସ୍ତକ ଶ୍ରୀ ବଳଦେବ ମହାପ୍ରଭୁଙ୍କର । ଜ: ପଲସେଳେ ଲେଖନକାର ଅଧମ ପଦ୍ମଚରଣ ମହାନ୍ତି, ମୌ-ଗୋପୋଳେ ଗ୍ରା-ହରିହରପୁର, ଆହେ ସୁଗ୍ୟଜନମାନେ ଶୁଦ୍ଧ ଅଶୁଦ୍ଧ ପୂରାଇ ଗାଇବ, ଲେଖକାର ଦୋଷ ନ ଧରିବ ।

61

Cat. No. Or. H/43.

## ଜଗନ୍ନାଥ ଚରିତାମୃତ

By — ଦିବାକର ଦାସ

**Jagannātha Charitāmṛta**

Divākara Dāsa

Substance—Palmleaf No. of folia—116, Size—43.5 × 31 C M. Each side contains 1 to 5 lines. Character—Oriya. Date of Copy—C. 19th century A, D. Complete. Condition—Worm eaten Find spot—Presented by G. N. Dāsa Gosvāmi Adhikārī, Tāṅgi, Dist Cuttack. Name of the scribe—Santha Charaṇa Dāsa.

**Colophon—** ଶ୍ରୀ ସ୍ୱମକୃଷ୍ଣ ଉଦ୍ଧବବେ ଅଧମ ସନ୍ତଚରଣ ଦାସକୁ । ଏ ତଉବଂଶ ଅଧ୍ୟା ସମାପ୍ତ । ଲେଖନକାର ଦୋଷ ନ ଧରବ । ଶୁଦ୍ଧ ଅଶୁଦ୍ଧ ପୂରାଇ ଗ ଇବ । ଭୁଲ ୧୫ ଦନେ ଲେଖା ସରିଲା । ବପ୍ର କୁଳୋଦ୍ଭବ ଲଖିଛଂ । ଲେଖନକାର ଦୋଷ ନାସ୍ତି । ଏ ପୋଥେକ ବେଣୀସ୍ୱମପୁର ରହଣି । ଏହା ଯେ ମାଗିନେଇ ଗୋପ୍ୟ କରିବ ଶ୍ରୀ ଜଗନ୍ନାଥ ମାହାପ୍ରଭୁଙ୍କ ଠାରେ ଅପରାଧୀ ହେବ ।

## 62

**Cat. No. O. L /536—B**

ଜଗନ୍ନାଥ ଜଣାଣ

**By—** ବୃନ୍ଦାବନ ଦାସ

**Jagannātha Jaṇāna**

**Bṛndāvana Dāsa**

**Substance—Palmleaf. No. of folia—10. Size—15 3 × 3.4 C.M. Each side contains 2 to 4 lines. Character—Oriya, Date of copy—C 19th Century A.D. Complete. Condition—Worm eaten. Find spot—Haladiā, P S. Khurdhā, Dist- Puri.**

ରାଗ — ଆହାରୀ

କହୁଛୁ ଆରତେ ଆହେ ଜଗନ୍ନାଥେ ଏହୁ ଆଜ୍ଞା ମୋତେ ହୋଉ ହେ ।
କୃପାସାଗର କୃପା କର ସଉର କ୍ଷେତେ ମୋର ଦନ ଯାଉ ହେ ॥
ଖଣ୍ଡିବ ଦୁରତ ହୋଇବ ମୁକତ ଭଗତଙ୍କ ସଙ୍ଗେ ମିଶି ହେ ।
ଜଗପତନାଥ ଧ୍ୟାନ କରୁଥିବ ଜଗମୋହନରେ ବସି ହେ ॥

× × ×

କ୍ଷିତମଣ୍ଡଳରେ ଆହେ ଘନବନ୍ଧୁ କୀର୍ତ୍ତି ପତାକା ଉଡ଼ିବ ହେ ।
କ୍ଷୀନ ହୀନ ଘନ ଦାସ ବୃନ୍ଦାବନ ଯେବେ ବାରେକ ଚରିବ ହେ ॥

Colophon— ଶ୍ରୀ ଶ୍ରୀ ରାଧାକାନ୍ତ ରକ୍ଷା କରନ୍ତୁ ମଙ୍ଗରାଜଙ୍କୁ ।

There are some folia containing କୌଶଲ୍ୟା ରୋଦନ and କୃଷ୍ଣଲୀଳା ଗୀତ towards the end of the manuscript.

**63**

**Cat. No. O. L /819—B**

ଜଗନ୍ନାଥ-ଜଣାଣ ଓ ଅନ୍ୟାନ୍ୟ

By—ଚନ୍ଦ୍ରଶେଖର ଗଜେନ୍ଦ୍ର ଓ ଅନ୍ୟାନ୍ୟ

Jagannātha Janāna & others

Chandraśekhara Gajendra & others

Substance—Palmleaf. No. of folia—26. Size—22.3×4.5 C.M. Each side contains 5 to 6 lines. Character—Oriya. Date of copy—C. 19th century A. D. Complete. Condition—Good. Findspot—Presented by Rājā of Haladiā P.S. Khurdhā, Dist—Puri.

ଶ୍ରୀ ଗୁରୁଭ୍ୟ ନମଃ । ଗୁରୁଭ୍ୟ ନମଃ ।

କହୁଛି ଜଗନ୍ନାଥ ଶ୍ରୀମୁରେ ଯୋଡ଼ି ହାଥ କରୁଛି କୋଟି ନମସ୍କାର
କାଳୀକାନ୍ତ ବରଞ୍ଚି ଚରଣେ ଭକ୍ତିରଞ୍ଜି ସ୍ତୁତି କରନ୍ତି ନିରନ୍ତର ।
ହେ ଜଗନ୍ନାଥ !
କରିବାକୁ ମୁଁ ସ୍ତୁତି ଗିର
କୁ ଜନ୍ମ ନର କଳେବର ।
କହୁଛି ଆର୍ତ୍ତେ ଦୁଃଖ ନାଥ ନୁହ ବିମୁଖ କହିବା ଆପୁଛ ମୋହର
ହେ ଜଗନ୍ନାଥ !

× × ×

